## ଲେଖକଙ୍କର ଅନ୍ୟାନ୍ୟ ରଚନା

* ଝଡ଼ର କବିତା
* ପ୍ରତୀକ୍ଷାରେ
* ମୁଠାଏ ନାଲି ଚୂଡ଼ୀ
* ରବିବାରର ଗଳ୍ପ
* ଯୁଗ ମାନବ
* ଫୁଲ ଓ ସ୍ଫୁଲିଙ୍ଗ
* ଆଗ୍ନେୟ ଶପଥ

(ସମର କବିତା ସଂକଳନ)

# ଝରଣା ଝରି ଝରିଯାଏ

# JHARANA JHARI JHARI JAE

( A Short Story Collection )

ପ୍ରଥମ ସଂସ୍କରଣ
୧୯୭୩

ରମେଶ ଧଳ

# କାହାଣୀ ପୂର୍ବରୁ

ଏହି ବହିରେ ଥିବା ପ୍ରତିଟି ଗଳ୍ପ ସମସାମୟିକ ବିଭିନ୍ନ ପତ୍ରିକା ମାନଙ୍କରେ ପ୍ରକାଶ ପାଇଥିଲା । ପ୍ରତି ଗଳ୍ପ ଶେଷରେ ଗଳ୍ପଟି ଯେଉଁ ପତ୍ରିକାରେ ପ୍ରକାଶ ପାଇଥିଲା ତାର ନାମ ଓ ସମୟ ଦିଆଯାଇଛି । ଯେଉଁ ସଂପାଦକମାନେ ସେମାନଙ୍କର ପତ୍ରିକାରେ ମୋର ଏହି ଗଳ୍ପ ଗୁଡ଼ିକୁ ପ୍ରକାଶ କରିବାର ସୁଯୋଗ ଦେଇଛନ୍ତି ମୁଁ ସେମାନଙ୍କୁ ଧନ୍ୟବାଦ ଜଣାଉଛି । ଏହା ବ୍ୟତୀତ ଶିଳ୍ପୀ ବନ୍ଧୁ ଶ୍ରୀ ମୁଖାର୍ଜୀ ବିଭିନ୍ନ ଚିତ୍ର ଗୁଡ଼ିକୁ ଅଙ୍କନ କରି ଦେଇଛନ୍ତି ଓ 'ବିଦ୍ୟାପୁରୀ' ପୁସ୍ତକଟି ପକାଶ କରିଛନ୍ତି । ସେମାନଙ୍କୁ ମୁଁ ଧନ୍ୟବାଦ ଜଣାଉଛି ।

ଗଂଜେଇଡିହ<br>ଢେଙ୍କାନାଳ<br>ଦୋଳପୂର୍ଣ୍ଣିମା<br>ତା୧୦।୩।୭୩ } **ଲେଖକ**

# ଏଥିରେ ରହିଛି

# ଝରଣା ଝରି ଝରି ଯାଏ



ଔଷଧଖିଆ ଗ୍ଲାସଟା ରଖୁ ରଖୁ ବନଲତା କହିଲା ମୁଁ କାଲି ଘରକୁ ଚାଲିଯିବି ବୋଲି ଭାବୁଛି । ବାପା ବି ବ୍ୟସ୍ତ ହେବେଣି । ତୋର ଦେହତ ଟିକେ ଭଲହୋଇ ଆସିଲାଣି । କ'ଣ କହୁଚୁ...ଭାନୁ ନୀରବ ରହିଲା । ଚକ୍ଷୁର ଡୋଳା ଦୁଇଟି ସ୍ଥିର—ନୟନର ସୀମାଧାର ସଜଳ ।

କିଛି ନ କହି ଚୁପ୍ ରହିଲୁ ଯେ...କଣ କହୁଛୁ ? ଦେଖ ଭୁ ସୁନା...କେତେଥର ପଚାରିଲେ ଆଉ ଉତ୍ତର ମିଳିବ ? ସୁନା ପ୍ରଶ୍ନକଲା ତମେ କ'ଣ ଯିବବୋଲି କହୁଛ ? ଏପର୍ଯ୍ୟନ୍ତ ତାହାହେଲେ ତୁ କ'ଣ ଶୁଣୁଥିଲୁ ଯେ...! ଷ୍ଟୋଭଠାକୁ ଲିଭାଇ ଲିଭାଇ ପ୍ରଶ୍ନଟିକୁ ନୟନରେ ଚାହିଁଲା ବନଲତା ।

ସୁନାର ଉତ୍ତରକୁ ଅପେକ୍ଷା ନ କରି ଭାନୁ କହିଲା, "ମୋ ଦେହ ଦେଖୁଛ...ମୁଁ ଶେଯରୁ ଉଠି ପାରୁନି...ଯିବା କଥା ତମେ କେମିତି

ଚନ୍ତା କର ପାରଲ ମୁଁ ସେହକଥା ଭାବୁଛୁ ; ଉତ୍ତରର ପ୍ରତି ଛନ୍ଦେ ଛନ୍ଦେ ଥିଲା ଅଭିମାନ ଆଉ ବିନମ୍ର ଅଭିଯୋଗ···ଗୋଟାଏ ଦାର୍ଘ ଡାକୁ ଭାଷା ଦେବା ଅସମ୍ଭବ । ଅବ୍ୟକ୍ତ ଅଥଚ ଅର୍ଥପୂର୍ଣ୍ଣ···ତୁମର କ'ଣ ମୁଁ କେହି ନୁହେଁ ?"

ଭାନୁର ନୟନର ସୀମାଧାରରେ ଅଶ୍ରୁ । ବନଲତା ଦେଖି ପାରବ ନା । ନା ତା'ର ଘରକୁ ଯିବା ଆବଶ୍ୟକ ନାହିଁ । ଭାନୁ ସମ୍ପୂର୍ଣ୍ଣ ହେବ ଆରୋଗ୍ୟ ତା ପରେ···ତା ପରେ···ସେ ଛାଡ଼ିବ ଏ ମହିଳା ନିବାସ । ଦୀର୍ଘ ତିନୋଟି ବର୍ଷ ଯାହା ପାଖରେ ସେ କଟାଇ ଆସିଲା···ଯାହାର ସ୍ନେହ ସହାନୁଭୂତି ସୁଖ ଦୁଃଖକୁ ଆପଣାର ବୋଲି ଅଂଗୀକାର କରି ନେଇଥିଲା···ସକାଳ ସୂର୍ଯ୍ୟ ବାତାୟନ ଛୁଇଁବା ଠାରୁ ଧରି ଅସ୍ତ ସୂର୍ଯ୍ୟର ବିଦାୟ ରାଗିଣୀ ବିହଗକଣ୍ଠରୁ ଶୁଣିବା ପର୍ଯ୍ୟନ୍ତ ଯେଉଁ ଭାନୁ ମେଷ ଶିଶୁଟିପରି ତାର ଆଜ୍ଞାଧୀନ ହୋଇ ଅଛି···ପାଣି ଗ୍ଲାସଟି ଓଠରେ ଲଗାଇବା ପୂର୍ବରୁ ଯେ ବନଲତା ଲାଗି ଭାଗରଖି ଦେଇଛୁ ତାକୁ ସେ ଆଜ ଛାଡ଼ିଦେଇ ଯିବ କିପରି ? ଭାନୁ ଆଉ ସୁନା···ବନଲତା ପକ୍ଷୀ ହେଲେ ଏ ଦୁହେଁ ତାର ଦୁଇ ବଳିଷ୍ଠ ପକ୍ଷ···ପର ନୁହେଁ ।

ବନଲତା, ଭାନୁ, ସୁନା ମହିଳା ନିବାସର ଅନ୍ତେବାସୀ···ଜଣେ ଯଦି ସୁମେରୁର···ଅପର ଜଣକ କୁମେରୁର···ଅନ୍ୟ ଜଣକ ହୁଏତ ମାହାରର ··ସମସ୍ତେ ଆସି ଏକାଠି ଜୁଟିଛନ୍ତି···ପ୍ରାଣ ପ୍ରାଣ ମଧ୍ୟରେ ହୋଇଛି ବିନିମୟ···ରୁଧିରରେ ସୃଷ୍ଟି ହୋଇଛି ତ୍ରିବେଣୀ···ଏ ବନ୍ଧନ ଛିନ୍ନ ହେବାର ନୁହେଁ । ଏଠି ହିସାବ ନିକାଶ ଲାଭ କ୍ଷତିର ପ୍ରଶ୍ନ ଉଠେନି । ଉଠେ ଆଶା ଆଉ ଆଲୋକର ଗାନ···ଜୀବନର ଯାତ୍ରା ପଥରେ ସମତାଳ ଦେଇ ଲୋଟି ଯିବାର ଛୁଟି ଯିବାର ତୀବ୍ର ବାସନା ।

ମହଲା ନିବାସର ପ୍ରାଙ୍ଗଣରେ ସେମାନେ ଲଗାଇଥିଲେ ତିନୋଟି କଲମି କଲଗୋଲାପ···ଆଜି ସେଥିରେ ଫୁଲ ଫୁଟିଲାଣି । ବେଶ୍ ଚମତ୍କାର ଫୁଲ । ଅପର୍ଯ୍ୟାପ୍ତ ଫୁଲ ।

ଆଲାରମ ବାଜିବା ସଙ୍ଗେ ସଙ୍ଗେ ବନୀତା ଶେଯ ତ୍ୟାଗ କରି ଆସି ପ୍ରସ୍ତୁତ କରେ କଫି । ନଟବର୍ଜନ ଶେଯ ଛାଡ଼ିଲେ ପ୍ରଥମେ ଖାଆନ୍ତି କଫି, ତାପରେ ସକାଳ ଅଫିସକୁ ଯିବାପାଇଁ ପ୍ରସ୍ତୁତ ହେବାକୁ ଲାଗନ୍ତି—ଏହି ଶେଯରୁ ଉଠି କଫି ଖାଇବା ମଧ୍ୟରେ ଯେଉଁ କେଇଟି ଅଳସ ମୁହୂର୍ତ୍ତ ମିଳେ ତାହା କର୍ମମସ୍ତ ଜୀବନର ପ୍ରାଣରେ ନୂତନ ସ୍ପନ୍ଦନ ଆଣି ଦେଇପାରେ ମନେ ହୁଏ ।

ବନୀତା କଫି କରିବା ଲାଗି ପାଣି ଗରମ କଲାବେଳେ ହଠାତ୍ ତାଙ୍କର କେତେଗୁଡ଼ିଏ ସ୍ମୃତି ମନରେ ନାଚି ଉଠେ । ସେ ଅସ୍ଥିର ହୋଇ ଉଠେ । ଠିକ୍ ଏହାପରେ ଭାନୁ ଷ୍ଟୋଭ ଜାଳି କଫି ପ୍ରସ୍ତୁତ କରେ । ଜଳଖିଆ ତିଆରି କରେ । ତାପରେ ଖାଇବା କଥା—ଭାନୁ କାମ କିନ୍ତୁ ସେତିକରେ ଶେଷ ହୋଇଯାଏ । ସେ ଗୃହେଁ ବନୀତାକୁ···ବନୀତା ସେ ଗୃହିଣୀର ଅର୍ଥ ବୁଝେ । ସେ ଅଧିକ ବିଳମ୍ବ ନ କରି ଭାନୁକୁ ଖୁଆଇ ବସେ । ସୁନା ସେହିପରି ଗୃହିଁ ବସିଥାଏ । ସମସ୍ତଙ୍କ ପରେ ପଡେ ବନୀତାର ପାଳି । ବନୀତା ଧୂଆହୋଇଥିବା ତିନୋଟି କପ୍‌ରେ କଫି ଢାଳିବସେ···ସୁନା ରବୀନ୍ଦ୍ର ସଙ୍ଗୀତରୁ ଫାଳେ ଫାଳେ ଗାଇ କପ୍‌ରେ ଚୁମ୍ବନ ଲେଖେ । ଭାନୁ ପ୍ରଶ୍ନ କରେ ବନୀତାର ଓଠ ଚେକି···କଣ ହେଲା କଣ ହେଲା···ସେ ଅଷ୍ଟମ ମନ୍ତ୍ରାନର ଗୌରବ ଲାଭ କରିଥିବା ଅଧ୍ୟାପକ କାନ୍ତକୁ ଉପର ରହିଲା···ସେ ଦିନ କଣ ସେ ଖାଲି ପାଦରେ ନଇବ୍ରେଷ୍ଟ ଯାଇଥିଲା···? ବନୀତା ବିରକ୍ତ ହୋଇ କହେ ତୋର ସେ କଥାରେ

ଏତେ ମୁଣ୍ଡ ଘୂରାଇବା କଣ ପ୍ରୟୋଜନ । ଫୁଲଟା ଆଣି ଦେଇଥିଲ କଣ ଏମିତ ? ଟେବୁଲ ଉପରୁ ଫୁଲଟି ନେଇ ହାତରେ ଧରୁ ଧରୁ ଭାନୁ କହେ ବନ ଅପା ଗୋଟାଏ ଫୁଲ କେଉଁଠୁ ଆଣିଲ ? ଗୋଟାଏ ଫୁଲ ତମେ ଆଣିଲ କାହିଁକି ? ମୁଁ ଲଗାଇ ପାରିବନି । ତମେ ଲଗା । ଆଉ ନଥିଲା···ସୁନା କହିଲା ତାହାହେଲେ ତମେ ପିନ୍ଧ···ଭାନୁ ହସି ଉଠେ—ଯିଏ ଲଗାଇଲେ ତ ମାନିବ···ବନିତା ଅଭିମାନରେ ଫୁଲି ଉଠେ । କିଛି କହେନି ଗୋଟି ଗୋଟି ହୋଇ ଗତ ସ୍ମୃତି ମନରେ ତାର ଜୀଇ ଉଠେ, ବସନ୍ତର ଆଗମନରେ ଯେମିତି ବୃକ୍ଷ ବନାନୀ ସବୁଜ ଶ୍ରୀରେ ପରିଣତ ହୁଏ । ଏହି ସ୍ମୃତିର ରୂପରେ କେବେ କେବେ ଝରି ଆସେ ନୟନରୁ ଧାରାଶ୍ରାବଣର ଧାରା ପରି ଲହର ଲହରି ।

ସେ ତନଟି କପ୍‌ରେ କଫି ଭରି ଦିଏ । ନଟରାଜନ ବନିତାକୁ ଚୃହିଁ କେବଳ ଟିକେ ହସନ୍ତି । ଏଇଟା କିଛି ନୂଆ ନୁହେଁ । ବନିତା ରାତରେ ବେଳେ ବେଳେ କପରି ପ୍ରଳାପ କରେ···ଭାନୁକୁ ଗାଳିଦିଏ···ଗାଳି ଦିଏ ସୁନାକୁ ସେ ସବୁ ଜାଣନ୍ତି । କିଛି ସମୟ ପରେ ପଚାରନ୍ତି ଆଉ କପେ କଫି କାହାଲାଗି । ବନିତା ସଚେତନ ହୋଇ ଉଠେ । ସେ ବୁଝାଇ କହେ ତାଂର ଲାଗି । ସବୁ ଦିନେ କହୁଛ କଫି ପାଉନି ପାଉନି । କଫି ହେଲେ କିନ୍ତୁ ତାର ନବରଙ୍ଗ ।

ସେଦିନ ନଟରାଜନ ଆଉ ବିଶେଷ କିଛି ନ କହି ପଚାରନ୍ତି ଭାନୁ କଣ ଚିଠି ଦେଇଥିଲା କି ? ସୁନା କପରି ? ସମସ୍ତେ କଣ ଭରି ଚୁପଚାପ୍ । ତାଙ୍କୁ ଆସିବାକୁ ଆଜ ମୁଁ ଲେଖିଛି ଦୁଇ ତିନିଦିନ ରହି ଫେରିଯିବେ ।

ବନୀତାର ସତେ ଯେପରି ଅମୃତ କରିବାର କିଛି ନ ଥିଲା । କ୍ଷଣଟିଏ ଚୁପ୍ ହେବା ପରେ ତା'ର ମନେ ପଡ଼ିଗଲା···ପ୍ରେଇ ଦୁଇଟାଙ୍କର ପରୀକ୍ଷା । ନା ନା ବର୍ତ୍ତମାନ ତାଙ୍କୁ ଚେଇଁବା ଦରକାର ନାହିଁ । ପରୀକ୍ଷା ସରିଲେ, ଯାହା କରିବ ।

ନଟବର୍ଜନ ପ୍ଲେଟଟିକୁ ଧୋଉ ଧୋଉ କହିଲେ ବାସ୍ ସେଇଯା ହେଉ । ଦେଖି ଦେଇ ଦେଇ ଟାଉଏଲଟା ଦେଇ । ମୁଁ ଯାଏ ଗାଧୁଏ, ସମସ୍ତ ବୋଧେ ହୋଇଗଲା । କେଇଟା ବାଜିଲା ?

ବନୀତା ଘଣ୍ଟାକୁ ଚାହିଁ ଉତ୍ତର କଲା ସାଢ଼େ ଛ'···ନଟବର୍ଜନ କକ୍ଷ ମଧ୍ୟରୁ ଚାଲିଗଲେ । ବନୀତା ପ୍ଲେଟ୍ କପ୍ ଏକାଠି କରୁ କରୁ ହଠାତ୍ ଟେବୁଲ ଉପରେ ଥିବା ରାଧାକୃଷ୍ଣଙ୍କର ଫଟୋଟି ତାଙ୍କ ଆଖିରେ ପଡ଼ିଗଲା । ବଂଶୀବାଲା କୃଷ୍ଣ···ପ୍ରଣୟ ବିଧୁର ରାଧାରାଣୀ··· ଯୁଗଲ ମୂର୍ତ୍ତି । ଭାନୁ ଦେଇଥିଲା ଉପହାର··ରାଜଧାନୀରେ ହେଉଥିବା ପ୍ରଦର୍ଶନୀରୁ କିଣି । ଭାନୁ ସତେ ବନୀତାର ସୁନାମ, ସୁଖ୍ୟାତିରେ କେତେ ଆନନ୍ଦ ପାଏ । ଯେଉଁ ଦିନ ନଳିନୀକୁ ପରୀକ୍ଷା ଲାଗି କଣ ପଢ଼ିବାକୁ ହେବ ବୋଲି ବନୀତା ବତାଉଥିଲା ଭାନୁ ଠିଆ ହୋଇଥିଲା ତା ପଛରେ । ସେ ଯେମିତି ନିଜ ରୁମ୍‌ରେ ପଶିଚ ଭାନୁ ବନୀତାକୁ ଖୁବ୍ ଜୋରରେ ଗୁଡ଼ି ଧରି କହିଲା, ବନି ଅପା ତମେ ସତରେ କେତେ ପଢ଼ିଛ । ମୋର ତମ ଉପରେ ଗୋଟାଏ ଭୁଲ ଧାରଣା ଥିଲା । ତମେ ବେଳେ ବେଳେ ଯେପରି ଦୁଅ ମୋର ମନେହୁଏ ତୁମେ ଗୋଟାଏ ଥାଡ଼ରେଟ୍ ଡଂକା । ବନୀତା ସେଦିନ ବିସ୍ମିତ ତଥା ଆନନ୍ଦରେ ବିଭୋର ହୋଇ

ଉଠିଥିଲା··· । ବନିତା ସତେ ତାକୁ କେତେ ଭଲପାଏ । ହଠାତ୍ ତାର ସେଇକଥା ମନେ ପଡ଼ିଗଲା । ମନରେ ତାର ପ୍ରଶ୍ନ ଉଠିଲା··· ସ୍ୱପ୍ନ ତାର କିଏ ?

କେହି ନୁହେଁ ?

ସତେ କଣ କେହି ନୁହେଁ ?

ସେ ଆଶ୍ଚର୍ଯ୍ୟହେଲା; ହଠାତ୍ ମନରେ ତାର ଏପରି ପ୍ରଶ୍ନ ଉଠିଲା କାହିଁକି ? ସ୍ୱପ୍ନ ତାର ପ୍ରାଣର ପ୍ରାଣ ସେ ତାକୁ ଭଲପାଏ··· ସେଠି ମାତ୍ର ସ୍ୱାର୍ଥର ଲକ୍ଷ୍ୟ ନାହିଁ, ପ୍ରତାରଣାର ମଖମଲି ମୀନାର····· ବନିତା କପ୍ ପ୍ଲେଟ୍ ଧରି ସେହିପରି ଚାହିଁ ରହିଥିଲା । ପଛରୁ ପ୍ରଶ୍ନ କଲେ ନଟରଞ୍ଜନ······

ଏତେ ସମୟ ଧରି କ'ଣ ଭାବୁଛ ?

କିଛି ନାହିଁ କହି ବନିତା ତ୍ୟାଗ କଲା କକ୍ଷ । ଦୂରରୁ ଶୁଣାଯାଉଥିଲା କାରଖାନାର ସାଇରନ୍‌ଟେ ।

ପୁରୁଣା ଚିଠି ବଣ୍ଡାଟା ଫିଟାଇ ମନଧ୍ୟାନ ସହକାରେ ଝଟ ଗୋଟାକ ପରେ ଗୋଟାଏ ଚିଠି ପଢ଼ିଯାଇ ତାର ଅଭିମତ ଦେଇ ଚାଲିଛି । ହଠାତ୍ ଗୋଟିଏ ଲଫାଫା ଭିତରୁ ସେ ଗୁଡ଼ିଏ ଫଟୋ ପାଇ ସେହିଗୁଡ଼ିକୁ ଚାହିଁ ବସିଲା । ପଛରୁ ଆସିହୋଇ ବନିତା ଚୁପ୍‌ଚାପ ସେସବୁ ଦେଖୁଥିଲେ । ହଠାତ୍ ବନିତା କହିଲେ କରେ ହୋଡିନ କରି ସେସବୁ କଣ କରୁଛ ? ଦସ୍ୟୁଙ୍କ ଲେକପରି ଝଟ ପ୍ରଶ୍ନ କଲା ଏସବୁ ଫଟୋ ମୋତେ କେବେତ ଦେଖାଇ ନଥିଲ ? ଏ ଫଟୋ କାହାର ? କୋଣାର୍କ ଅଶ୍ୱ ନିକଟରେ ନିଆଯାଇଥିବା ଫଟୋଟି ପଛରେ ଲେଖାଯାଇଥିଲା·····ବନ ଅପାଙ୍କୁ ଉପହାର·····ବିରକ୍ତ ହେଉଛ ଲେଖିଦେଲି ବୋଲି·····ଦୁଃଖ ନାହିଁ ମୋର । ଲେଖିବାର ଅଧିକାର ଅଛି । ତେଣୁ ଲେଖିଛି ।

ଖନଖନ କଣ୍ଠ ସ୍ୱରରେ ପ୍ରଶ୍ନ କଲା ଝିଅ ଏ କିଏ ? ବନର ହଠାତ୍ ମନେ ପଡ଼ିଗଲା ସରଳା ଭାଉର କଥା... । ବନର ପ୍ରତି କଥାରେ ପ୍ରତି କାମରେ ସେ ଗୃହିଣୀ ରହିଯାଇ ତାର ବ୍ୟକ୍ତିତ୍ୱର ଛାପ । ଦୂରେଇଗଲେ, ହଜିଗଲେ ସତେ ଯେମିତି ମନରୁ ଲଭିଯିବ ନାହିଁ ତାର ସତ୍ତା । ସେ ଗୃହିଣୀ ଦୂରରେ ହେଉ, ନିକଟରେ ହେଉ, ପରୋକ୍ଷରେ ହେଉ ବା ପ୍ରତ୍ୟକ୍ଷରେ ହେଉ ଏଇ କେଇଟା ଅକ୍ଷର ତାଙ୍କର ବନ୍ଧନକୁ ଚିର ଶ୍ୟାମଳ କରି ରଖିବ । ସେଦିନ ଭାଉ ମାଡିକାମି କରି ଲେଖି ଦେଇଥିଲା । ଝିଅ ଆଜି ପଢୁଛି ।

ସେ କିଏ ଚଢ଼ି ପାରୁନୁ ?

"ଚଢ଼ି ପାରୁଥିଲେ ଘଟୁରଥାନ୍ତ କାହିଁକି ?"

"ଭାଉ ମାଉସୀ ପରି ।"

"ଓଃ" ଭାଉ ମାଉସୀ, ଘୋଡ଼ା ଉପରେ ନ ଚଢ଼ି ତାକୁ ଆଉଜି ଫଟୋ ନେଇଛନ୍ତି କାହିଁକି ? ଫଟୋ ନେଲାବେଳେ ଘୋଡ଼ା ପଳାଇଥିଲେ ଫଟୋ ଖରାପ ହୋଇ ଯାଇଥାନ୍ତା ନୁହେଁ ?

ସେ ଘୋଡା ପଥରର ! ସେ ପଳାଇ ପାରିବ ନାହିଁ !

ଝିଅ ପୁଣି ପ୍ରଶ୍ନକଲା ତୁ ସବୁବେଳେ ଭାଉ ମାଉସୀ କଥା କହୁ କାନ୍ଦୁ ସେ ଦେଖିବାକୁ କିପରି ?

"ମଲା, ଫଟୋ ପରି ଧରିଛୁ ଦେଖୁନୁ ।"

"ମାଉସୀ ସବୁବେଳେ ତାହାହେଲେ ଏହିପରି ଗୋଟେ ଘୋଡ଼ାକୁ ଆଉଜି ଠିଆହୋଇଛି...ହିକିଏ ହିକିଏ ହସୁଛି ।" ବନ ଝିଅର ଉତ୍ତର ଶୁଣି ହସି ହସି କହିଲେ ହଁ ତୋ ମାଉସୀ ସବୁବେଳେ ଗୋଟାଏ ଘୋଡ଼ାଧରି ବୁଲୁଛି ! ସେ ତ ଏବେ ତୋତେ ଦେଖିବାକୁ ଆସିବ !

ଝଟ ସାମାନ୍ୟ ଖୁସି ହୋଇ କହିଲ ଯାହାହେଉ ମୁଁ ନିଜେ ମାଉସୀ ଘୋଡ଼ାରେ ଚଢ଼ି ବୁଲି ଆସିବ । ଘୋଡ଼ାରେ ତ ଚଢ଼ିବୁ କିନ୍ତୁ ମାଉସୀ ଆସିଲେ ପ୍ରଥମେ କଣ କରିବୁ ?

"ନମସ୍କାର ।"

ସୁନା ବାହାଃା ମୋର । ମାଉସୀ ଭାରି ଖୁସି ହେବ । ସେ ଯଦି ପଚାରିବ ତୋ ନାଁ କଣ ? ତୁ କଣ କହିବୁ ?

କିଛି କହିବ ନାହିଁ ।

"କାହିଁକି ?"

ମାଉସୀ କଣ ଆଜଯାଏ ମୋ ନାଁ ଜାଣିନାହିଁ ଯେ ଆସିଲେ ମୋତେ ନା ପଚାରିବ । ମୋ ନାଁ ନ ଜାଣି ମୋ ପାଇଁ ସେ ବହି କେମିତି ପଠାଇଥିଲେ ?

ବନ ହସି ଉଠିଲେ ।

ନଟବରଜନ ଠିଆହୋଇ ସବୁ ଶୁଣୁଥିଲେ । ହଠାତ୍ କହିଲେ, ନା ମାଉସୀକୁ ତୋ ନାଁ ମୋଟେ କହିବୁ ନାହିଁ କହି ତାକୁ କାନ୍ଧ ଉପରକୁ ନେଇ ନେଇ ବନତାକୁ କହିଲେ—ଭିନୁ ଚିଠି ଦେଇଛି ନିଅ ।

ସେ ଚିଠି ଖୋଲି ପଢ଼ିଲେ ଭିନୁ ଲେଖିଛି—ବନଅପା ନମସ୍କାର ନେବୁ । ଦିନେ ଦିଦିନ ମଧ୍ୟରେ ଯାଇ ହେଉଥିବ । ସୁନାକୁ ଅପେକ୍ଷା କରିଥିଲି । ଆଜ ତାଠାରୁ ଚିଠି ପାଇଲି ସେ ଆସିପାରିବ ନାହିଁ । ସୁଶାନ୍ତବାବୁ ହଠାତ୍ ଡେପୁଟେସନରେ କୁଆଡ଼େ ଯାଉଛନ୍ତି । ଘରେ ତାର କେହି ନାହାନ୍ତି । ନଣନ୍ଦ ତାର

ପରୀକ୍ଷା ଦେବେ । ତେଣୁ ତାଙ୍କୁ ରହିବାକୁ ପଡ଼ିବ । ଏଣୁ ମନ କଷ୍ଟ ହେଲା । ନିକଟରେ ଆମେ ତିନିହେଁ ବୋଧହୁଏ ଏକାଠି ହେବାର ଯୋଗ ନାହିଁ । ବାକି ସବୁ ସାକ୍ଷାତରେ ।

ଝଝ ଓ ସାଇବବାବୁ ଭଲ ଥିବେ । ଝଝକୁ ଶୁଭେଚ୍ଛା ଓ ସାଇବଙ୍କୁ ପ୍ରଣତିସହ ରହୁଛି ।

ଚିଠିଟି ପଢ଼ିସାରି ଅତି ଉଦାସୀନ ଭାବେ ବନିତା ଚାହିଁଲେ ବାହାରକୁ । ବାହାରେ ମେଘମୁକ୍ତ ନିର୍ମଳ ଆକାଶରେ ଥିଲା କେଇଟି ନୀଳ ତାରା ।

---

* ରବିବାର "ପ୍ରଜାତନ୍ତ୍ର"
ତା ୨୮ ମାର୍ଚ୍ଚ ୭୨




ବସ୍ ଯାଇ ପହଞ୍ଚେ ଷ୍ଟେଠ ଠାଉନ୍‌ସିପରେ ରାତି ଗୋଟେ ଦଶଟାରେ। ରିନା ଘରକୁ ଆସିବ। ଅଗରୁ ଖଟି ଲେଖିଥାଏ। ତେଣୁ ବସ୍ ଷ୍ଟାଣ୍ଡକୁ ଲୋକ ଆସିଥାନ୍ତି। ରିନା ଏତେ ଦୂରରୁ ଏକା ଅସେ ଅଥଚ ବସ୍ ଷ୍ଟାଣ୍ଡରୁ ଘର ମୋଟେ ଦେଢ଼ ମାଇଲର ରାସ୍ତା। ପିଲାଟିଦିନୁ ଏ ରାସ୍ତାଘାଟ ତାର ପରିଚିତ। ତଥାପି ଏକା ଆସିବାକୁ ବାପା ତାର ପସନ୍ଦ କରନ୍ତି ନାହିଁ। ବାପା ତାର ନିଜେ କେବେ କେବେ ବସ୍ ଷ୍ଟାଣ୍ଡକୁ ଯାଆନ୍ତି ଝିଅକୁ ଆଣିବାକୁ। ନଚେତ୍ ଶୋଇବାକୁ ଯିବା ପୂର୍ବରୁ ପିଅନକୁ ବାରମ୍ବାର ତାଗିଦ୍ କରି ଶୋଇବାକୁ ଯାଆନ୍ତି, "ବସ୍ ଆସିବା ପୂର୍ବରୁ ଷ୍ଟାଣ୍ଡକୁ ଯାଇଥିବୁ।" ରିନା ମନେ ମନେ ହସେ। ସେ ଆସି କଲେଜରେ ପଢ଼ିଲା। ତଥାପି ବି ବାପାଙ୍କ ଦୃଷ୍ଟିରେ ସେ ପିଲା। କିଛି ନ ହେଲେ ଅନ୍ତତଃ ସେ ହରିଚନ୍ଦନଙ୍କ ଝିଅ, ବଂଶ ଆଭିଜାତ୍ୟ ଅଛି, ପ୍ରତିପତ୍ତି ଅଛି, ତାଙ୍କ ଝିଅ ସେ। ବସ୍ ଷ୍ଟାଣ୍ଡରୁ ସେ ଏକାକୀ ଆସିବ ଘରକୁ ? ହରିଚନ୍ଦନ ବରଦାସ୍ତ କରିପାରିବେ

ନାହିଁ । ତାଙ୍କ ବଡ଼ଲୋକୀରେ ଅଝ ଅସିବ । ରିନା ହସେ ଯେତକ, ନିଜକୁ ପରିହାସ କରେ ଯେତକ, ତାଠାରୁ ଅଧିକ ନିଜକୁ ଭାଗ୍ୟବତୀ ମନେ କରେ । ମନେ ମନେ ପ୍ରାର୍ଥନା କରେ; ଅଜୀବନ ବାପାଙ୍କର ଏ ସ୍ନେହ ତାର ଜୀବନ ପଥର ପାଥେୟ ହେଉ ।

ଘରସ୍ଥଡ଼ ରିନା ଯାଏ କଲେଜ । ସେ ଘରଠାରୁ ଯେତକ ଦୂରକୁ ଯାଏ, ଛୁଟିଦିନ ଯେତକ ନିକଟ ହୋଇ ଆସେ, ତା ଆଗରେ ସେତକ ଅଧିକ ଅଧିକ ନାଚ ଉଠେ ଭାଇଙ୍କ ସାନ ଝିଅଟା । ନମା, ନମ୍ରନ ଦୁଇଟି ତାର ଗ୍ଲେଟ ଗ୍ଲେଟ । କେଶରାଜି କୁଞ୍ଚିତ । ଦରେଷ୍ଟି କଣ୍ଠର ଭାଷା ତାର ଉପଭୋଗ୍ୟ । ସ୍ପର୍ଶ ତାର ଅମୃତ । ଅଭିଯୋଗ ତାର ନିଷ୍ପାପ ଆଦର ବୋଲା । ଚୁମ୍ବନ ତାର ଲକ୍ଷ୍ୟ ତପସ୍ୟାର ପ୍ରତିଦାନ । ନରମ ପାପୁଲି ଦୁଇଟିରେ ମୁଣ୍ଡକୁ ଧରି ନମା ଆଦରରେ ଲେଖିଦଏ ରିନା ମୁହଁ ଓ ଗାଲ ଉପରେ ଚମ୍ବନ । ରିନା ଅପର ଗାଲଟି ଦେଖାଇ ଦିଏ । ନମା ତାର ଲାଲ ଟୁକୁ ଟୁକୁ ଓଠ ଦୁଇଟିକୁ ପୁଣି ନୁଆଁଇ ଆଣେ । ରିନା ନମା ମୁହଁକୁ ଅପଣା ମୁହଁ ଉପରେ କ୍ଷଣଟିଏ ଚୁପିଧରି ତାକୁ କୋଳକୁ ଟାଣିଅଣେ । ଗୋଟିଏ ଚୁମ୍ବନ ଟାଣିଦଏ ତାର ସେହି ସତେଜ ଶୁଭ୍ର ଲଲାଟ ଉପରେ । ରିନା ସବୁ ଭୁଲିଯାଏ । ନିଜ ଘର ଲୋକଙ୍କ ବକ୍ଷରେ ତାର ସବୁ ଅଭିଯୋଗ ବରଫ ଜଳରେ ପରିଣତ ହେଲା ପରି ଅସ୍ତିତ୍ୱ ହରାଏ । ଘର ପ୍ରତି ବିଶେଷତଃ ଏହି ନମା ପାଇଁ ତାର ହୃଦୟରେ ସ୍ୱତଃ ଗୋଟାଏ ଦୁର୍ବଳତା । ସେ ନିଜେ ନିଜକୁ ପ୍ରଶ୍ନ କରେ, ସତେ ନମାକୁ ଭୁଲି ସେ କଣ ଛୁଟିରେ ଘରକୁ ନ ଆସି ରହି

ପାରୁଥାଅନ୍ତା ? ନା, ବାପାଙ୍କୁ ସେ ଗୋଟାଏ ଖିଅାଲରେ ସେପରି ଲେଖି ଦେଇଥିଲେ ।

ରିନା ବସ୍‌ରୁ ଆସି ପହଞ୍ଚେ ଘଡିର । କିନ୍ତୁ ସମୟ ପାଇଁ ସମସ୍ତେ ଉଠନ୍ତି । ରିନା ଖିଆପିଆ ସାରିଲେ, ପୁଣି ସମସ୍ତେ ଶୋଇବାକୁ ଯାଆନ୍ତି । ଭାଇ ଘରେ ନ ଥିଲେ କେବେ କେବେ ଭଉଜ ବିନ୍ଦୁ ଓ ରିନା ଶୋଇ ଗପ ଆରମ୍ଭ କରି ଦିଅନ୍ତି । ସେ ଗପର ନିର୍ଦ୍ଦିଷ୍ଟ ସୀମାରେଖା ନ ଥାଏ । ତାହା ଗଡ଼ଗଡ଼ିଆ-ଘାଟଠାରୁ ଛତ୍ରପତିବଜାର, କଟକ କ୍ୟାପିଟାଲ ସିନେମାଠାରୁ କ୍ୟାପିଟାଲ କ୍ୟାଣ୍ଟିନ୍, ଓଡ଼ିଶାର ଶୁନାହ ଶାର୍ଦ୍ଦୁଳ ଆର୍ମକାଇନ୍ ବ୍ଲାଉସ୍, ଅବସରପ୍ରାପ୍ତ ଅଧ୍ୟାପକ ଗିରିଜା ବାବୁଙ୍କଠାରୁ ତାଙ୍କ ଯୁବତୀନିବାସର ଟିଅନ ସ୍ତ୍ରୀ ଗୌରୀ ପର୍ଯ୍ୟନ୍ତ ଯେ କୌଣସି ବିଷୟ ଉପରେ ଗପ ଚାଲେ । କେବେ କେବେ ରାତି ପାହିଯାଏ । ଝରକା ଫାଙ୍କରେ ସୂର୍ଯ୍ୟ ରଶ୍ମି ର ସୁନା ସ୍ପର୍ଶ ଝଲକ ଉଠେ । କୁକୁଡ଼ା ଡାକେ, ହୁଏ ସକାଳ । ବିନ୍ଦୁ କହନ୍ତି, ଏ ରିନା ଆସି ସକାଳ ହେଲା । ରିନା ଏଥିରେ କୌଣସି ବିସ୍ମୟ ପ୍ରକାଶ କରେ ନାହିଁ, କହେ, ତୁମେ ଯାଅ । ମୁଁ ଶୋଇଛି, ନମି ଉଠୁ ।

ରିନା ଶୋଇବାର ଚିତ୍ତାରଣା କରେ । ବିନ୍ଦୁ ନମିକୁ ଉଠାଇ କହନ୍ତି, ନମି ତୁ ଶୋଇଥା । ମୁଁ ଯାଉଛି । ଡାକିବୁ ନାହିଁ । ରିନା ଅପା ଶୋଇଛନ୍ତି ସେ ଉଠିବେ । ଏଇ ଛୋଟ ପରିବାରଟିରେ ରିନାର ଆସିବାକୁ ଯଦି କେହି ବ୍ୟଗ୍ରତା, ବ୍ୟସ୍ତ-ତାର ସହିତ ଚାହିଁ ରହିଥାଏ ତେବେ ସେ ହେଉଛି ନମି । ସନ୍ଧ୍ୟା ସୂର୍ଯ୍ୟ ଅସ୍ତ ହେବା ପୂର୍ବରୁ ତାର ଚକ୍ଷୁରେ ତନ୍ଦ୍ରାର ସ୍ପର୍ଶ ଲାଗେ । ସେ ବସ୍ ଆସିବା ପର୍ଯ୍ୟନ୍ତ ଚାହିଁ ରହନ୍ତା କିପରି ? ତେବେ ସନ୍ଧ୍ୟା ପର୍ଯ୍ୟନ୍ତ ସେ ତାର କର୍ତ୍ତବ୍ୟରେ ହେଳା କରେ

ନାହିଁ । ବାପା ଭୋଜ, ଘଇ ଭଉଣୀ, ଗୃହର ବାକର, କାନ୍ଥବାଡ଼ ଯାହାକୁ ପାଏ ଅପା କେତେବେଳେ ଆସିବ ପଚାରି ପଚାରି ବ୍ୟସ୍ତ କରିଦଏ । ଛୋଟ ପୋଷା କୁକୁର ଛୁଆ ସମ୍ମୁଖରେ ମନକୁ ମନ କହେ ଟମି ବୁଝିଲୁ, ରନା ଅପା ଆଜ ଆସିବ ତୁ ତାକୁ ଚିହ୍ନୁ ? ତାଙ୍କ ଘର କଟକରେ । ସେ କଟକରେ ପଢେ । ଛୁଟିରେ ଅରଥର ଆସିଥିଲା । ଆଜ ଆସିବ । ତୋର ମନେ ଅଛି । ବୋକାଟା କିଛି ମନେ ରଖୁନାହିଁ । ଆରେ ମୋ ରନା ଅପା ମୋ ପାଇଁ ମଟର ଆଣିଥିଲା, ଚକଲେଟ ଆଣିଥିଲା । ଏଥର ମୁଁ ତା ସଙ୍ଗରେ କଟକ ଚାଲିଯିବ ତୁ ଏକା ରହିବୁ । କାହା ସଙ୍ଗରେ ଖେଳିବୁ ? ବନ୍ଧୁ ଏସବୁ ଶୁଣି ହସି ଉଠନ୍ତି ।

ରନା ନାଁ ଶୁଣି ନମୀ ଉଠି ବସେ ଯାଇ ତା ଅପା ପାଖରେ ଠିଆ ହୁଏ, ହଲଏ । ରନା ପୂର୍ବପରି ଚୁପ୍‌ଚାପ । ଛୋଟ ହାତଟି ଯାଇ ତା'ର ପିଠିକୁ ଲାଗି ଶୁଏ । ରନାର ଅଞ୍ଚଳଟିକୁ ଆଣି ଘୋଡ଼ି ହେବାକୁ ଚେଷ୍ଟା କରେ । କିନ୍ତୁ ଅପେକ୍ଷା କରିବାକୁ ଧୈର୍ଯ୍ୟ ତାର ପାଏ ନାହିଁ । ସେ ଯାଇ ବସେ ରନାର ମୁଣ୍ଡ ଉପରେ । ଆଖି ଦୁଇଟିକୁ ଫିଟାଇବାକୁ ଚେଷ୍ଟା କରେ । କହେ ଅପାଟା ମରି ଗଲଣି । ରନା ଆଉ ହସ ସମ୍ଭାଳି ପାରେ ନାହିଁ । ନିଦ ନିଦ ଆଖିରେ ଗୃହିଁ ପଚାରେ କରେ ନମୀ । ମିଠା ଉତ୍ତର ମିଳେ "ତୋ ପାଖରେ ଶୋଇଥିଲି ।"

"ମିଛେଇ ।"

ମାଲୁ ପଚାରନ୍ତି ମୁଁ ମିଛ କହୁ ନାହିଁ, ମିଛ କହିବାକୁ ମା ମନାକରିଛି । ଏଇ ପଦକ ଶୁଣିବାପାଇଁ ଆସିବା ଲାଗି ସତେ

ଯେମିତ ତାର କଲେଜ ବନ୍ଦ ହୋଇଛି । ଏତକ ନମୀଠୁଁ ଶୁଣିବାକୁ ସେ ସତେ ଅପେକ୍ଷା କରିଥିଲା । ସେ ଆନନ୍ଦରେ ଅସ୍ଥିର ହୋଇ ଉଠି ତାକୁ ଛାତି ଉପରକୁ ଟାଣି ଆଣେ । ପଚାରେ ନମୀରେ, ତାହାହେଲେ ତୁ ମୋ ପାଖରେ କାଲିଠୁ ଶୋଇବୁ, ନୁହେଁ । ତାପରେ ନମୀ ତାର ପ୍ରଶ୍ନ ଯେଉଁଗୁଡ଼ିକ—ରିନା ବୋଉ କେମିତ ? ରିନାକୁ ପିଏ ମାଡ଼ ଦିଏ ନା ନାହିଁ ? ସେ ଗଲେ ତା ବୋଉ ତାକୁ ଗାଳି ଦେବେ ନା ନାହିଁ ? ତାକୁ ଏଥର ଗଲାବେଳେ ସାଙ୍ଗରେ ସେ ନେବ ନା ନାହିଁ ? ଟମି କା' ସାଙ୍ଗେ ଖେଳିବ । ଏହିପରି ଅନେକ କଥା । ଏହିପରି କିଛି ସମୟ ଗଲାପରେ ବାପୁ ଭଉଜ ନଣନ୍ଦଙ୍କ ପାଇଁ ଆଣି ଦିଅନ୍ତି ଚା' । ଶୋଇବା ଶେଯରେ ବସି ରିନା ଚା' ଖାଏ । ଛାତ୍ରୀ ନିବାସରେ ରହିବା ପରେ ଏ ଚା' ଖାଇବା ଅଭ୍ୟାସ ରିନାର ବଢ଼ି ଯାଇଛି । ଚା' ପରେ ରିନା ଶେଯ ଛାଡ଼େ । ଦିଠିରେ ଝୁଲେ ନମୀ । ଛୁଟି ରାତି ଶୀଘ୍ର ସରିଯାଏ । କର ଲେଉଟାଇ ଯୋଡ଼ିହେଲା ବେଳକୁ ଆଉ ରାତି ନ ଥାଏ । କାଯ୍ୟ ସଙ୍ଗେ ଛାଯ୍ୟ ପରି ରିନା ସଙ୍ଗେ ସଙ୍ଗେ ରହେ ନମୀ । ଦିନ କେଇଟି ସେ ସବୁ ଭୁଲିଯାଏ । ତାର ପାଠପଢ଼ା, ଟିଉଟୋରିଆଲ କ୍ଲାସ, ଆଗାମୀ ପରୀକ୍ଷା, ସହପାଠିନୀ, ସହବାସିନୀ ସବୁ କିଛି ।

ଛୁଟି ମଧ୍ୟରେ ଯଦି କେହି କଟକ ଆସୁଥାଏ ଓ ରିନା ଘର-ବାଟେ ଆସେ, ନମୀ କୌଣସି ପ୍ରକାରେ ଏକଥା ଜାଣି ପାରିଲା ତେବେ ସେ ଯେଉଁଠି ଥାଏ ଦୌଡ଼ି ଦୌଡ଼ି ଆସି ପହଞ୍ଚେ ରିନା ପାଖରେ । ତାକୁ ଧରି ବ୍ୟସ୍ତ ହୁଏ । କାନ୍ଦିବାକୁ ଆରମ୍ଭ କରେ । ତୁ ଗୁଲିଯିବୁ, ମୋତେ ମିଛ କହୁଛୁ । ସେ ଆସିଛନ୍ତି ତୋତେ ସଙ୍ଗରେ ନେଇଯିବେ । ରିନା ଦୃଢ଼ସ୍ୱରରେ କହେ,

ନମା ଏମିତ ଅମାନିଆ ହେଲେ ମୁଁ ଚାଲିଯିବି। ତୁ ତୁନି ହୁଅ। ମୋତେ ବିଶ୍ବାସ କର । ମୁଁ ଆଜି ଯାଉ ନାହିଁ । ନମା ଧୀରେ ଧୀରେ ଚୁପ୍ ହୁଏ । ଆଶ୍ବସ୍ତ ହୁଏ ଅପା ତାର ଯିବ ନାହିଁ ।

ପରୀକ୍ଷା ଆଉ ଅଳ୍ପ ଦିନ । ଋନା ଘରକୁ ଯାଇନାହିଁ । ଛାତ୍ରୀ ନିବାସରେ କେଇଜଣ ପରୀକ୍ଷାର୍ଥୀମାଙ୍କୁ ବାଦ ଦେଲେ ଅନ୍ୟମାନେ ସମସ୍ତେ ଚାଲିଗଲେଣି । ଭାଇଙ୍କ ପତ୍ରରୁ ଋନା ଜାଣିଲା ନମା ଖୁପଣ ବେମାର । ଭାଉଜ ଓ ନମା ବର୍ତ୍ତମାନ ଡାକ୍ତରଖାନାରେ । ସେ ଲେଖିଛନ୍ତି ତୋର ଆସିବାର କୌଣସି ଦରକାର ନାହିଁ । ନିୟମିତ ପଢ଼ାପଢ଼ି କରୁଥିବୁ । ପରୀକ୍ଷା ଅଳ୍ପ ଦିନ ରହିଲା । ସ୍ବାସ୍ଥ୍ୟପ୍ରତି ସାବଧାନ । ରାତିରେ ବେଶି ସମୟ ପଢ଼ିବୁନି । ଆଉ ସବୁ ପରେ । ତୋର ଭାଇ । ଭାଇ ଏ ଚିଠି ଲେଖିଛନ୍ତି ଅଫିସରୁ । ଡାକ୍ତରଖାନାରୁ ଭାଉଜଙ୍କ ଚିଠିରୁ ସେ ଜାଣିଲା—ନମାର ବେମାର ବଢୁଛି । ତାର ସେ ପୂର୍ବ ଚେହେରା ଆଉ ନାହିଁ । ଦେହରେ ତାର ଅଛି ବୋଲି ଆଉ କଣ୍ଠା କେଇଖଣ୍ଡ । ସବୁବେଳେ ତୁମକୁ ଖୋଜୁଛି । ଦିନକ ପାଇଁ ଆସି ପାରିବ ? ସକାଳୁ ଆସି ସନ୍ଧ୍ୟାରେ ଚାଲି ଯାଆନ୍ତ । ତା ଲାଗି କଟକ-ଚଣ୍ଡୀଙ୍କ ପାଖରେ ଟଙ୍କାକର ଭୋଗ କରିଦେବ । ମୋତେ ମୋଟେ ଭଲ ଲାଗୁନାହିଁ । ଆଉସବୁ ପରେ ।

ସନ୍ଧ୍ୟା ଡାକରେ ଚିଠି ଦୁଇଟି ଆସିଛି । ସେ ଏକା ଅଛି ରୁମ୍‌ରେ । ଅନ୍ୟ ସମସ୍ତେ ଚାଲି ଯାଇଛନ୍ତି ସିନେମା । ଭାଉଜଙ୍କ ଚିଠିଟି ପଢ଼ି ଋନାର ଆଖି ଛଳ ଛଳ ହୋଇ ଉଠିଲା । ତାର ମନେ ହେଲା ସତେ ଯେମିତି ନମା ଆସି ତା ପାଖରେ ବସିଛି । ଦିନେ ଦିନେ ରାତିରେ ନମା ତାର ମା ପାଖରୁ ଚୁପ ଚାପ ଚାଲି ଆସେ ଋନା ପାଖକୁ । ମଶାରି ଭିତରେ ପଶେ ଋନା ପାଖରେ ଶୋଇବାପାଇଁ । ଋନା ତାକୁ ଧରି ପଚାରେ, ହଇରେ ନମା ତୁ ତୋ ଅପାକୁ ଚାହିଁକି ଭଲପାଉ ?

ସେ ଯଦି ମରିଯାଏ, ତେବେ ତୁ କାହା ପାଖରେ ଶୋଇବୁ । ନମିର ନୟନ ଧାରୁ ଛଳ ଛଳ ହୋଇ ଉଠେ । ରନା ଆଉ ଅଧିକ ଡେରି ନକରି ତାକୁ ପାଖକୁ ଟାଣି ନିଏ । ମୃତ୍ୟୁ ଯେ ଭୟଙ୍କର ନମି ବେଶ୍ ବୁଝେ । ରନାର ଆଉ ଅବୁଝା ରହେ ନାହିଁ ଗୋଟିଏ ଛୋଟ ହୃଦୟ ତଟରେ ତା ପାଇଁ ଯେ ଅମୂଲ୍ୟ ସ୍ନେହ ମମତା ସଞ୍ଚିତ ଅଛି ।

ରନା ଆଉ ପଢି ପାରିଲା ନାହିଁ । ବହିର ପ୍ରତି ପୃଷ୍ଠା ଉପରେ ନମିର ମୁହଁ ନାଚି ଉଠିଲା । ସେ ବହି ଛାଡ଼ି ଯାଇ ଶୋଇଲା ଶେଯରେ । ଝରକା ଦେଇ ଚନ୍ଦ୍ର ଜ୍ୟୋସ୍ନା ଶ୍ୱେତ ବିଛଣା ଚଦର ଉପରେ ବିଚ୍ଛୁରିତ ହୋଇ ପଡ଼ୁଛି । ବାହାର ଆକାଶକୁ ଚାହିଁ ଶୋଇଛି ରନା । ଏଇ ଚନ୍ଦ୍ରକିରଣ ପ୍ରତି ରନାର ଅହେତୁକ ମାୟା । ଚନ୍ଦ୍ର ପଡ଼ିଥିବା ଶେଯରେ ଶୋଇ ସେ ବହୁତ ଆନନ୍ଦ ପାଏ । ନିଜକୁ କୌଣସି ଅଲଅଳ ରାଜକୁମାରୀଠାରୁ ସେ କେବେ ନ୍ୟୂନ ଭାବେ ନାହିଁ । ଆଜି କିନ୍ତୁ ଏ ଚନ୍ଦ୍ର ତାକୁ ଆନନ୍ଦ ଦେଇ ପାରୁନାହିଁ । ସେ ନିଜକୁ ସାତ ଦରିଦ୍ରଙ୍କଠାରୁ ନିଃସହାୟ ଓ ନ୍ୟୂନ ମନେ କରୁଛି ।

ପୂର୍ଣ୍ଣଚନ୍ଦ୍ର ମଧ୍ୟରେ ସେ ମୃତ ଶଶକର ଚିହ୍ନ ନ ଦେଖି ଦେଖୁଛି ଦୁଇଟି ଅଶ୍ରୁସିକ୍ତ ନୟନ, ଯୁଗ୍ମ କମନୀୟ କରର ବିଦାୟ ପ୍ରଣତି । ଏହିଥର ରନା ଘରୁ ଆସିଲାବେଳେ ନମି, ଭଉଜ, ଭାଇ ସମସ୍ତେ ଷ୍ଟେସନକୁ ଆସିଥିଲେ । ନମି ରନା ସଙ୍ଗେ ଆସିବାପାଇଁ ଜିଦ୍ଧରି ବସିଲା । ଯେତେ ବୁଝାଇଲେ ବୁଝିଲା ନାହିଁ । ନମି ତା' ପରଦିନ ଟମିକୁ ନେଇ ଅପା ପାଖକୁ ଆସିବା ସ୍ଥିର ହେଲା । ବାପାଙ୍କର ଏ ପ୍ରସ୍ତାବ ମନକୁ ମାନିଲା । ଟମିକୁ ନନେଲେ ସେ ସେଠି ଏକା ଘରେ ରହିବ କିପରି ? କାହା ସଙ୍ଗେ ଖେଳିବ ? ଗାଡ଼ି ଛାଡ଼ିଲା । ବିନ୍ଦୁ କହିଲେ ନମି ଅପାକୁ ନମ କରି ଦେ, ନମ କରି ଦେ । ସୁନା ଝିଅଟି ଆମର । ଦୁଇଟି ଛୋଟିଆ ହାତ ଏକାଠି ହୋଇଗଲା । ରନାର

ଚକ୍ଷୁ ସଜଳ ହୋଇ ଉଠିଲା । ପ୍ଲାଟଫର୍ମରେ ସେ ହାତ ଦୁଇଟି ଲମ୍ବେଇବା ପର୍ଯ୍ୟନ୍ତ ରଜା ଗାଡ଼ିଭିତରୁ ସେହିପରି ପଦାକୁ ଚାହିଁଥାଏ । ତା ସମ୍ମୁଖରେ ସେଦିନର କରୁଣ ମୁହୂର୍ତ୍ତଟି ସିନେମାର ଛବିପରି ଆଜି ନାଚି ଯାଉଛି ।

ସେ ଦିନକପାଇଁ ଘରକୁ ଯିବାକୁ ନାହିଁ ଭାବୁଛି ହଠାତ୍ ପାଇଲା ଗୌରୀ ହାତରୁ ଟେଲିଗ୍ରାମ । ସେ ନିଜକୁ ବିଶ୍ୱାସ କରି ପାରିଲା ନାହିଁ । ନନ୍ଦା ତା ରଜା ଅପାକୁ ଛାଡ଼ି ସବୁଦିନ ଲାଗି ଚାଲି-ଯାଇଛି । ସେ ବସ୍ତ୍ର, ଲାଲ୍ ରିବନ, କନାପୁଅ, ମଟର ଗାଡ଼ି ଆଉ କିଣିବା ଦରକାର ନାହିଁ । ରଜା ଅକାମାରି ବସି ପଡ଼ିଲା । ତା' ଆଗରେ ନାଚି ଉଠିଲା ସେହି ପରିଚିତ ପ୍ଲାଟଫର୍ମ ଉପରୁ ସେହି ଛୋଟ ହାତ ଦୁଇଟି ନମାଇ । ଭାଉଜ କହୁଥିଲେ ଦେ, ନମସ୍କାର ଦେ । ଅପା ଯାଉଛନ୍ତି ପରା ! ତୋପାଇଁ ମଟର ଆଣିବେ, ଚକଲେଟ୍ ଆଣିବେ, ଆମ ସୁନା ଝିଅଟା, ନମସ୍କାର ଦେ ।

---

* ରବିବାର "କଳିଙ୍ଗ"
ତା ୧୧ ନଭେମ୍ବର ୭୧




ରବିବାର । ସପ୍ତାହରେ ଗୋଟିଏ ଦିନ ।
ମଣିଷକୁ ସେଦିନ ସାମାନ୍ୟ ଅବସର ମିଳେ । ମଇଳା ମନ, ମଇଳା ଦେହକୁ ସଫା କରିଦେବା ପାଇଁ ସୁଯୋଗ ଯୁଟେ । ସେଦିନ ନାହିଁ ଅଫିସର ପାଇଁ ଅଫିସ ଘଣ୍ଟାର ଆହ୍ୱାନ ଅବା ସ୍କୁଲ ପାଇଁ କ୍ଲାସ ଲଗି ପ୍ରସ୍ତୁତ ହେବାର ବ୍ୟଗ୍ରତା । ଏଇ ଗୋଟିଏ ଦିନ । ଅଜୟ ମନ ଖୁସିରେ ଦେହରେ ସାବୁନ ଲଗାଇ ସଫା ହୁଅନ୍ତି । ସକାଳୁ ଟେଯରେ ଦୁଇତିନି ଖଣ୍ଡ ଚଉ ଶେଷ କରି ଶେଯ ଛାଡନ୍ତି । ତା ପରେ ଖୁଙ୍ଖିଳ ଗାଲ ଉପରେ ସାବୁନ ଦେଇ ନିଜର

ଘ୍ଷୋଟ ଘ୍ଷୋଟ ଦାନ୍ତି ଗୁଡ଼କ ସଫା କରନ୍ତି । କେବେ କେବେ ସେଇ ସାବୁନ ବୋଳା ଅବସ୍ଥାରେ ପଦେ ଅଧେ ସିନେମା ସଙ୍ଗୀତ ଗାଆନ୍ତି । ବେଳେବେଳେ ସିନେମା ଯାଆନ୍ତି ନଇଲେ ନାହିଁ ।

ଅଜୟ ପଞ୍ଚମ ବର୍ଷର ଛାତ୍ର । ଉଦ୍ଦେଶ୍ୟ ଅଛି ଯଦି ଓ. ଏ. ଏସ୍. ମିଳିଯାଏ ତେବେ ଆଉ ଏମ୍. ଏ. ପଢ଼ିବେ ନାହିଁ । କିନ୍ତୁ ଓ. ଏ. ଏସ୍. ତ ବଡ଼ ବିଚିତ୍ର ଜିନିଷ । ସେଥିରେ ଆଶା ରଖିବେ କିଏ ? ଓ.ଏ. ଏସ୍. ର ଦ୍ୱାର କେବଳ ମଣିଷ କାହିଁକି ଗଧ, ଗାଈ, ଗୋରୁ, ଛେଳି, କୁକୁଡ଼ା ସମସ୍ତଙ୍କ ପାଇଁ ଉନ୍ମୁକ୍ତ । କେବଳ ପରୀକ୍ଷା ଫି'ଟା ଦେଇ ପାରିଲେ ହେଲା । ଅତୀତ ଯାହା ହେଉ ନା କାହିଁକି ଏଇ ପରୀକ୍ଷାରେ ସାମାନ୍ୟ କାରସାଦି ଦେଖାଇ ପାରିଲେ ହେଲା । ଏଠି ଯଦି କୌଣସି କାରଣରୁ ଗଧ, ଘୋଡ଼ା ଠାରୁ ଦୌଡ଼ିବାରେ ବଳି ଫାଷ୍ଟ ହୋଇଗଲା ତେବେ ଗଧ ଘୋଡ଼ା ଠାରୁ ଅଧିକ ବେଗବାନ୍ ବୋଲି ଧରି ନିଆଯାଇ ସରକାରୀ ବାହାଲି କରାଯାଏ । ଅନର୍ସ ଥିଲେ କିଏ ହେଲା ତାଙ୍କୁ ଯେ କେହି ତୃତୀୟ ଥର ଫେଲ ପରେ ସପ୍ଲିମେଣ୍ଟାରୀରେ ବି. ଏ. ପାଶ୍ ବାଲା ଠିକ୍ ନଯିବ କିଏ କହିବ । ସେଥିପାଇଁ ଓ. ଏ. ଏସ୍. ଲାଗି ପ୍ରସ୍ତୁତ ହେଉଥିବା ସଙ୍ଗେ ସଙ୍ଗେ ଏମ୍. ଏ. ପଢ଼ା ବି ଚାଲିଛି । ତେଣୁ ଖାଟେଣି ଟିକିଏ ଅଧିକ ପଡୁଛି । ରବିବାରରେ ବି ନିଶ୍ୱାସ ମାରିବାକୁ ବେଳ ଟିକିଏ ମିଳେ ନାହିଁ ।

'ମୈଥିଳୀ' ଘ୍ଷୋଟ ମେସ୍ ଟିଏ । ଚାରି ଗୋଟିଏ କୋଠରୀର ସେ ହେଲା ଅନ୍ତେବାସୀ । କୋଠରୀଟି ସାନ । ସେଥିରେ ଅଛନ୍ତି ତିନି ଜଣ । ଜଣେ ଲ'ଛାତ୍ର, ଅନ୍ୟ ଜଣେ ସାମୟିକ (causual) ଛାତ୍ର ଓ ନିଜେ ସ୍ୱୟଂ ଅଜୟ । ଲ' ଛାତ୍ର—ସମ୍ଭ୍ରାନ୍ତ ବଂଶୀୟ,

ପିତାଙ୍କର ଧନ ସମ୍ପତ୍ତି ଅଛି । ସେଥିପାଇଁ ସେ ଯୋଗ୍ୟ ହେବା ପାଇଁ ଉଚିତ ଚେଷ୍ଟା କରନ୍ତି ନାହିଁ । ସାଥୀ, ସିନେମା, ସିଗାରେଟ୍ ଏତିକି ହେଲେ ତାଙ୍କର ଆଉ ଦୁଃଖ ନାହିଁ । ସାମୟିକ ଛାତ୍ର—ଓକିଲଙ୍କ ସନ୍ତାନ, ସାମାନ୍ୟ ବୟସ୍କ । ତାଙ୍କ ସଙ୍ଗରୁ ଛ’ ବ୍ୟାଚ ଏମ୍. ଏ. ପାଶ୍ କରି ଗଲେଣି । ସେ କିନ୍ତୁ ସେମିତି ଛାତ୍ର ଅଛନ୍ତି । ତାଙ୍କ ମତରେ ପାଠ ନ ପଢ଼ି ମଧ୍ୟ ରାଜନୀତି କରାଯାଇପାରେ । ବୟସ ଅଧିକ ହୋଇଗଲେ ମଧ୍ୟ ସେ କଲେଜ ଛାଡ଼ିବା ପାଇଁ ନାରାଜ । କାରଣ ଛାତ୍ରମାନଙ୍କୁ ଏଣୁତେଣୁ କହି ସେମାନଙ୍କର ନେତା ସାଜି ବିଭିନ୍ନ ରାଜନୈତିକ ଦଳ ସହ ଯୋଗସୂତ୍ର ରକ୍ଷିବା ପାଇଁ ଏ ଗୋଟାଏ ଉପଯୁକ୍ତ ସ୍ଥାନ । ସେଥିପାଇଁ ଭୂଦାନକର୍ମୀଙ୍କ ଠାରୁ ଧରି ବିଡ଼ି ୟୁନିଅନ୍‌ର ସଂପାଦକ ପର୍ଯ୍ୟନ୍ତ ସମସ୍ତଙ୍କ ସଂଗେ ତାଙ୍କର ପରିଚୟ । ତାଙ୍କର ଦୟାରୁ ଏ ସାନ କୋଠରିଟିରେ ସର୍ବଦା ଚହଳ । ଅଜୟ—ଦରିଦ୍ର ଛାତ୍ର । ବିଦ୍ୟା ତାଙ୍କର ସର୍ବସ୍ୱ । ସେ ବେଶ ବୁଝିଛନ୍ତି ଏ ପାଠର ମୂଲ୍ୟ ଯାହା ହେଉନା କାହିଁକି ତାଙ୍କୁ ବଂଚିବାକୁ ହେଲେ ଖୁବ୍ କମ୍‌ରେ ଅଶୀ ଟଙ୍କାର ଗୋଟିଏ ଚାକିରି ନିହାତି ଦରକାର ।

ତେଣୁ ଅଜୟ ଚାହାନ୍ତି, କୋଠରି ଦ୍ୱାର ସର୍ବଦା ବନ୍ଦ ରହୁ । ଗୋଳମାଳ କମୁ । କିନ୍ତୁ ହୋଇପାରେ ନାହିଁ । ଲ’ ଛାତ୍ର ସକାଳୁ କଲେଜ ଯାଇ ନ’ଟାରେ ଫେରନ୍ତି ବନ୍ଧୁ କେଇଜଣଙ୍କୁ ସଙ୍ଗରେ ଧରି । ସିନେମା ଷ୍ଟାରଠୁ ଧରି, ନୂଆକରି ଫାଷ୍ଟ ଇୟରରେ ନାମ ଲେଖାଇଥିବା ସେ ତନୁପାତଳୀ ସାବନା ହିଁ ଅଛି ଯାହାଙ୍କ କଲେଜ କୁଇନ୍ ହେବା ପାଇଁ ଯୋଗ୍ୟ । ଏପରିକି ନର୍ସ ଅନୁଦେଇ ଛାତ୍ର ସେଗୀମାନଙ୍କୁ କାହିଁକି ଅଧିକ ଯତ୍ନର

ସହୃତ ସେବା କରୁଥାନ୍ତି ଓ ଅନ୍ୟାନ୍ୟ ବହୁବିଧ ଆଲୋଚନା ଦ୍ୱାରା କୋଠରୀଟି ସରଗରମ ହୋଇ ଉଠେ । ତା ପରେ ଚାକର ଆସେ ଝାଡ଼ୁ କରିବ । ପୂଜାରୀ ଖାନା ଦେବ । ଏସବୁ ବ୍ୟତୀତ ସାଥୀଙ୍କ ବହି ଦେବା ନେବା ପାଇଁ ତ ଆସନ୍ତି । ଏପରି ଅବାଞ୍ଛନୀୟ ପରିସ୍ଥିତିରୁ ଚେଷ୍ଟା କଲେ ରକ୍ଷା ମିଳିଯାଆନ୍ତା କିନ୍ତୁ ଏଥିପ୍ରତି ଦୃଷ୍ଟି ଆକର୍ଷଣ କରାଇବା ପାଇଁ ଅଜୟ କିଏ ? ଘରଭଡ଼ା ପନ୍ଦର ଟଙ୍କାରୁ ତାଙ୍କ ଭାଗ ପାଞ୍ଚ ଟଙ୍କାରୁ ସେତ କେବେ ପାହୁଲାଟିଏ ଅଧିକ ଦଅନ୍ତି ନାହିଁ । ବରଂ ତାଙ୍କ ବାକୀ ଘରଭଡ଼ା ପାଇଁ କେବେ କେବେ ଘରବାଲା ନିକଟରେ ଅନ୍ୟ ଦୁହେଁ ଅପଦସ୍ତ ହୋଇଛନ୍ତି । ସାବଧାନ ହେବାପାଇଁ ସେ ଲ’ ବନ୍ଧୁଙ୍କୁ କହିଦେଇ ପାରନ୍ତି । କିନ୍ତୁ ସାମୟିକ ଛାତ୍ର ଶୈଳେନ୍ଦ୍ରଙ୍କୁ କ’ଣ କହିବେ ? ସେତ ନିଜେ ନିଜର ଦାୟିତ୍ୱ ବୁଝନ୍ତି ନାହାନ୍ତି ।

ଦୀର୍ଘଦିନ ପରେ ଆଗାମୀ କାଲି ରବିବାରଟିରେ ବେଶି ପଢ଼ି ପାରିବେ ବୋଲି ସ୍ଥିର କରି ଅଜୟ ମସାରି ପକାଇଲେ । ଲ’ ବନ୍ଧୁ ନାହାନ୍ତି । ନାହାନ୍ତି ନେଗା ବନ୍ଧୁ । ସମସ୍ତଙ୍କୁ ଅନ୍ତତଃ କାଲି ସେ ଗୋଟିଏ ଉତ୍ତର “ନାହାନ୍ତି” ଶୁଣାଇ ସୁଖୀ କରି ଫେରାଇ ଦେବେ ।

ଘର ମଥାନ ଉପରେ ରବିବାରର ପଲପଲିଆ ସକାଳ ନଇଁ ଆସିଛି । ଅଜୟ ବହି ଖୋଲି ଭାବୁଛନ୍ତି ଗଳ୍ପ ରାତିରେ କେଉଁଠୁ ଛାଡ଼ିଥିଲେ । ହଠାତ୍ ଶୁଣି ପାରିଲେ ଘର ମାଲିକଙ୍କର ନିକଟସ୍ଥ ଗୁହାଳ ଘରେ ପାଟି । ଘର ମାଲିକ, ତାଙ୍କ ସ୍ତ୍ରୀ, ଝିଅ, ପୁଅ, ପୂଜାରୀ, ଚାକର, ଚାକରାଣୀ ସମସ୍ତେ ନବ ପ୍ରସୂତ ବାଛୁରୀ ଓ ତାର ମା ଗତ ରାତିରେ ଯେ କଷ୍ଟ ପାଇଲେ ସେଥିପାଇଁ ଦୁଃଖ

କରୁଛନ୍ତି ସତେ ଯେପରି ଗାଈ ପାଇଁ କାଲି ରାତରେ କେହି ଶୋଇ ନ ଥିବେ । ହେଉ ସଞ୍ଜ୍ୟାକ ଏ ଅଭିନୟ । ତା ପରେ ପହିଞ୍ଚ କହି ସେ ବହି ଘୁଞ୍ଚିଲେ । ବହି ଘୁଞ୍ଚ ବସିଛନ୍ତି ହଠାତ୍ ଶୁଣି ପାରିଲେ କେହି ଜଣେ କବାଟରେ ଆଘାତ କରୁଛି । ଅଜୟ ଭିତରୁ ପ୍ରଶ୍ନ କଲେ କିଏ ?

"ବାବୁ ବିସ୍କୁଟ୍ ।"

"ନା ଦରକାର ନାହିଁ ।"

"ବିସ୍କୁଟ୍, କେକ୍, ଅନରଟେକଲ, ସୁଟେଷ୍ଟା, ନାନ୍‌ଖଟେଇ, ପାଉଁରୁଟି, ଅଜକା ମାଲ୍ ସବୁ ସକ । ଦେଖନ୍ତୁ ବାବୁ ।"

ଅଜୟଙ୍କ ଆଗରେ ନାଚିଗଲା ସେହି ପରିଚିତ ମଣିଷଟି । ଧନାକେତେ ଫେରି କରୁଥିଲା । ଏବେ ବିସ୍କୁଟ୍ ବିକୁଛି । ଲମ୍ବା ଲମ୍ବା ବାଳ । ଦାନ୍ତ ସବୁ ପାନଖାଇ ପାଚି ଯାଇଛି । ସେହି ରଙ୍ଗଦାନ୍ତ ମଝିରେ ପିତଳ ବସା ଦାନ୍ତଟା ବାରି ହୋଇପଡ଼େ । ଘର ବର'ମପୁର । ସେ ଜାଣନ୍ତି ତାକୁ ସାମାନ୍ୟ ବିରକ୍ତ ନ ହେଲେ ସେ ଯିବ ନାହିଁ । ତେଣୁ ଚଢ଼ା ଗଳାରେ ସେ କହିଲେ—

"ଥରେ ତ କହିଲି କିଛି ଲୋଡ଼ା ନାହିଁ । ନା ପରେ······। ସେ ଚାଲିଯିବା ପରେ ବହିକୁ ଚାହିଁଛନ୍ତି କି ନାହିଁ ଶୁଣିଲେ ଜଣେ ଡାକୁଛି—

"କୋଷ ଦେଡ଼ା······, ଛେନା ପେଡ଼ା······ବାବୁ ପେଡ଼ା······ରଖିବେ ?"

"ନାଇଁ"

"ବାଙ୍କି ପଇସାଟା ମିତ୍ର—ଅଜକୁ କହିଥିଲେ ?"

"ନା ସିଏ ନାହାନ୍ତି ।"

"ଗଲେ କୁଆଡ଼େ ? ଆସିବେ କେବେ ?"

"ମୁଁ ଜାଣେ ନାହିଁ ।"

"ବାବୁ ଆଜକୁ କହିଥିଲେ !"

ଅଜୟ କଣ କହିବେ ବୋଲି ଭାବୁଥିଲେ ହଠାତ୍ ଜଣକର ଉଚ୍ଚ କଣ୍ଠର ଚିତ୍କାର ତାଙ୍କ ବାତାୟନର ରେଲିଂ ଦେଇ ପିଚ୍ଛି-ହୋଇ ଉଠିଲା । "ଦହି ବାବୁ ଦହି—ବସା ଦହି, ଘୋଲ ଦହି, ଦ'ହି··· !"

"ଅରେ ପରା କହିଲି ଜାଣେ ନାହିଁ ।"

ପେଡ଼ାବାଲା ମନେ ମନେ ବିରକ୍ତ ହୋଇ ଚାଲିଗଲା । ଅଜୟ ମନେ ମନେ କହିଲେ, "ସିନେମା, ସିଗାରେଟ୍ ତ ବନ୍ଦ ନାହିଁ, ଏଇ ଗରିବଗୁଡ଼ାଙ୍କର କାହିଁକି ବାକି ରହୁଛି ।" ନିକଟସ୍ଥ କୋଠରୀରୁ ଗୋଲମାଲ କମି ଆସିଲା ପରି ମନେହେଲା । ମାଲିକଙ୍କ ଗଳାର ପାଟି ମଝିରେ ମଝିରେ ଯାହା ଶୁଭୁଥିଲା "ହଇ ମାଣିକ, ବଇଲା, ହ' ହ' !"

ସବୁ ଗୋଲମାଲ ଶେଷ ହେଲା ଭଳି ବାହାରୁ ଚାହାନ୍ତି ତ ଶୁଣିଲେ ଘର ମାଲିକଙ୍କ ନିର୍ଦ୍ଦେଶ । ସେ ଲୁହାଛଡ଼କୁ ସେଠୁ ଉଠାଅ । ବାଲି ଗଦା କରି ଦିଅ । ପଥର ସବୁ ଗୁଣ୍ଡ କର । ଅଜୟ ମନେ ମନେ ବିରକ୍ତ ହେଲେ । 'ଦିନଟା ଏମିତି ମାଟି ହୋଇଯିବ ସିନା ।' ଏଠି ଏପରି କାମ ଚାଲିଲେ କିଏ କିପରି ବା ପଢ଼ିବ । କଣ ଗୋଟାଏ କହିବେ ବୋଲି ଉଠି ଆସି ଦେଖନ୍ତି ମାଲିକ ଡ୍ରାଇଭରକୁ ଗାଳି ଦେଇ ଚାଲିଛନ୍ତି । ସେ ଟ୍ରକ୍ ସଫା କରି ନାହିଁ କାହିଁକି ? ଅଜୟଙ୍କ ପାଟିରୁ ବାହାରି ଆସୁଥିଲା "କଣ ଆଜ୍ଞା ଏମିତି ଚାଲିଥିବ ! ଆମେ ଯେ ଏଠିକୁ ପଢ଼ିବାକୁ ଆସିଛୁ ଭୁଲି

ଯାଉଛନ୍ତି କାହିଁକି ?" କିନ୍ତୁ ସେ କିଛି କହି ପାରିଲେ ନାହିଁ । ସତେ ଯେପରି କିଏ ତାଙ୍କୁ ତାଙ୍କର ପଛରୁ କିଏ ଟାଣି ଧରିଲା । ତାଙ୍କର ହଠାତ୍ ମନେ ପଡିଗଲା ତାଙ୍କ ଉପରେ ତିନି ମାସର ଘରଭଡ଼ା ବାକି । ଦୀର୍ଘ ଦିନ ଏଠି ସେଠି ପଡ଼ିଲା ପରେ ଏବେ ସାମାନ୍ୟ ଆଶ୍ରୟ ପାଇଛନ୍ତି । ବହୁତ ଦୟା ଏ ମାଲିକଙ୍କର । ଯେତେ ଇଚ୍ଛା ସେ ପାଟି କରନ୍ତୁ । ଆଉ ଅଧିକ ଭଡ଼ା ନିଅନ୍ତୁ । ହୁଅନ୍ତୁ ସେ ଦୀର୍ଘଜୀବୀ । ଭଗବାନ ଆଶୀର୍ବାଦ କରନ୍ତୁ ତାଙ୍କର । ସେ ବିଶ୍ୱବିଦ୍ୟାଳୟର କୁଳପତି ହୁଅନ୍ତୁ ନା ନା ହୁଅନ୍ତୁ ଶିକ୍ଷା ମନ୍ତ୍ରୀ । ସତ ଚାହିଁଲେ ଯେଉଁମାନେ ଦେଶ ଚଳାଇବେ ଯେଉଁମାନଙ୍କ ପାଇଁ ବକ୍ତୃତା ମଞ୍ଚରେ ଦେଶର ମନ୍ତ୍ରୀମାନେ ଗର୍ବ କରି ବକ୍ତୃତା ଦେଲେ ଛାତି ଫୁଲନ୍ତି ସେମାନଙ୍କୁ ଅନ୍ତତଃ ମୁଣ୍ଡ ଗୁଞ୍ଜିବାକୁ ସାମାନ୍ୟ ସ୍ଥାନ ସେ ଦେଇଛନ୍ତି ସେଇ ମାତ୍ର ଯଥେଷ୍ଟ । ଭାଗ୍ୟର କଥା । ଅଜୟ 'ଆପଣାର କୋଠରୀକୁ ଫେରିଗଲେ । ଏ ମଧ୍ୟରେ ମାଛବାଲା, ପରିବାବାଲା, ବାସନ କାଗଜ କିଣାବାଲା, କ୍ଷୀରବାଲା ପାଟି କରି କରି ଆପଣାର ଆଗମନର ମହତ୍ତ୍ୱ ଉଦ୍ଦେଶ୍ୟରେ ବିଜ୍ଞାପନ ଶୁଣାଇ ଶୁଣାଇ ଚାଲିଗଲେଣି । ଅଜୟ ସମସ୍ତଙ୍କୁ ଦେଖିଛନ୍ତି ଏ ଲୋକଟି ବ୍ୟତୀତ । ସେ ଏଇଟି ପାଟି କରି, ଯାଉଛି "ବାଦାମ ଲଡୁ, ଝୁଡ଼ା ଲଡୁ, ଘିଅ ଲଡୁ-ଲଡୁ ।"

କୋଠରୀ ଦରଜା ବନ୍ଦ କରି ଦୁଇପାଲ ପଢ଼ିଛନ୍ତି ହଠାତ୍ ଜଣେ ଆସି ପ୍ରଶ୍ନ କଲା "ଶୈଳେନ୍ଦ୍ରବାବୁ ଅଛନ୍ତି" । ପ୍ରଶ୍ନକର୍ତ୍ତା ଚିହ୍ନିଲା ପରି ମନେ ହେଲ । ଦେଖିଛନ୍ତି ହଏତ କେଉଁଠି । ବୟସ ବେଶୀ ନୁହେଁ । ପତଳା ଦେହ, କଳା କଳା ଆଖି, ମୁଗ୍ଧ ମୁଗ୍ଧ ବାଳ । ଓଠ ଦାଢ଼ି ତେତେ ଭଲା ହୋଇନି ।

ଅଜୟ ପ୍ରଶ୍ନ କଲେ କ'ଣ କାମ ଥିଲା । "ଏ ଚିଠି ନିଅନ୍ତୁ । ଆସିଲେ ତାଙ୍କୁ ଦେଇଦେବେ, କହିବେ ସେବିକା ଶ୍ରୀମତୀ ମହାନ୍ତି ଭୂଦାନ ଅଫିସଠାରେ ଅପେକ୍ଷା କରିଛନ୍ତି । ଯଦି ପାରନ୍ତି ଅଫିସକୁ ନିଶ୍ଚୟ ଯିବେ । ନଚେତ୍ ଯାଇ ଗାଡ଼ିରେ ଦେଖା କରିବେ । ସେ ଯିବେ କେକାଲରେ । ମନେ କରି କହିଦେବେ । ନିହାତି ଜରୁରି କାମ ଅଛି ।

ଯେଉଁଟି ବାରଣ୍ଡା ଡେଇଁନାହିଁ—କଳା କଳା ଲମ୍ବା ନିଟ, ଅଯତ୍ନ ସଜ୍ଜିତ କେଶରାଜି, ଦେହରେ ଲମ୍ବା ମଇଳା ମାଟିଆ ପୋଷାକ, ପାଦରେ ହଳେ ରଙ୍ଗଛାଡ଼ି ଯାଇଥିବା ରେକ୍ସିନ୍ ସୁ, ବୋଧ-ହୁଏ କୌଣସି ପିଅନ ହେବେ । ଆସି ପଚାରିଲେ ଶୈଳେନ୍ଦ୍ରବାବୁ ଏଇଠି ରୁହନ୍ତି ତ ?

"ହିଁ" ।

"କେଉଁଠିକୁ ଯାଇଛନ୍ତି" ?

"ଜାଣେ ନି" ।

"କେତେବେଳେ ଫେରିବେ ?"

"ସେ କଥା ବି ଜଣାନାହିଁ । କି କାମ ଅଛି ? ଏପରି ବ୍ୟସ୍ତ ହେଉଛ କାହିଁକି ?"

"ନାଇଁ ବାବୁ ସାଇବ ଅଛିଛନ୍ତି···ଡକାଇଥିଲେ ।"

"ସାଇବ, କେଉଁ ସାଇବ, କି କାମ ଅଛି, ନାଁ କଣ ?"

"ମେ-ଲେ-ଏ ଶ୍ରୀ ସାହୁ । କଂଗ୍ରେସ ଦଳର । ଏ ବାବୁଙ୍କ ମାମୁଁ ହେବେ । ସେ ଆସିଲେ କହିଦେବେ ଆମେ ଚାଲି ଯାଉଛୁ । ଯାଇ ଭୁବନେଶ୍ୱରରେ ଦେଖା କରିବେ ମୁଁ ଡାକି ଆସିଥିଲି । ନବୀନ । ତାଙ୍କ ମାମୁଁଙ୍କ ଡ୍ରାଇଭର ।"

ଅଜୟ ମନେ ମନେ ସାମାନ୍ୟ ହସିଲେ । ମାମୁଁ କଂଗ୍ରେସ ଏମ୍. ଏଲ୍. ଏ., ମାଉସୀ ଗ୍ରାମସେବିକା, ଅଜା ଜମିଦାର, ପିଉସାଙ୍କ

ପୁଅ ଘର ସାମ୍ୟବାଦୀ ନେତା । ଭଉଣୀ ନାସ୍ତିକର୍ମୀ, ଗାଁ ବାଲା ଭୂଦାନୀ, ସ୍ୱୟଂ କମ୍ୟୁନିଷ୍ଟ । ଏଡ଼ିଥ କଣ ? ଯିଏ ଯେତେବେଳେ ସରକାରକୁ ଆସିବେ ସେଠି ସେ ଆପଣାର ଆଧିପତ୍ୟ ରଖି ପାରିବେ । ଧନ୍ୟରେ ସ୍ୱାଧୀନତା ! କ ସ୍ୱାଧୀନି ! କେହି ତ ଜଣେହେଲେ ସେବା କରନ୍ତି ନାହିଁ । ସବୁ ଖାଲି ସ୍ୱାଧୀନି ଓ ଠକାମି । ସମସ୍ତେ କେବଳ କାଗଜ କରିଅରେ ଆପଣାର ପ୍ରଚାର ଚଳାଇ ଚାଲିଛନ୍ତି । ଦେଖାଯାଉ ଏମିତି କେତେଦିନ ଚାଲିବ । ଡ୍ରାଇଭର ଚାଲିଗଲେ ।

ଅଜୟ ସେଲ୍‌ଫରୁ କଲମଟା ଆଣି ନୋଟ୍ କରିବାପାଇଁ ଆରମ୍ଭ କରୁଛନ୍ତି, ଦେଖିଲେ ସେହି ପୁରୁଣା ପରିଚିତ ଯୁବକଟି । ଗୋରା ଦେହ, ଚକାମୁହାଁ, ଛୋଟ ଆଖି, ଦ୍ରାବିଡ଼ କଟ୍ ନାକ, ମୋଟା ଓଠ । ହାତ ବ୍ୟାଗରେ ଗୁଡ଼ିଏ ବହି । ସବୁ ମସ୍କୋ ପ୍ରକାଶନୀ । ସେଠି ତାଙ୍କ ସରକାର ଭଲ ସର୍ଭେଣ୍ଟ, ସେ ଦେଶରେ ଗୁଣୀ ଅଛନ୍ତି, ଜ୍ଞାନୀ ଅଛନ୍ତି । ତାର ପ୍ରଚାର ଚଳାଇଛନ୍ତି ଦେଶ ବିଦେଶରେ ଏହି ବହି ଜରିଆରେ । ଯୁବକଟି ପଚାରିଲା 'କୈଲେନ୍ଦ୍ର ବାବୁ ଅଛନ୍ତି ?' ଅଜୟ କେବଳ ମୁଣ୍ଡ ହଲାଇଲା । ଯୁବକଟି ଫେରିଯାଉଥିଲା, ପୁଣି ଫେରି ଆସି କହିଲା ଆଜ୍ଞା ଦୟାକରି ଟିକଏ ବାବୁଙ୍କୁ କହିଦେବେ ଚାରିଟା ପୂର୍ବରୁ ସେ ଯେପରି ଯାଇ ପାର୍ଟିଅଫିସରେ ପହଞ୍ଚନ୍ତି । ଅମିୟବାବୁ କହିଛନ୍ତି ଆଜି ବଡ଼ ୟୁନିଅନର ଗୋଟାଏ ଶୋଭାଯାତ୍ରା ସେଇଠୁ ବାହାରିବ ।

'ହଉ ଯାଆନ୍ତୁ ।'

ଚାଲି ଯାଉଥିଲେ । ପୁଣି ଅଟକି ଯାଇ କହିଲେ, "ନୂଆ ବହି ଆସିଥିଲା ଦେଖିବେ । ଦେଖନ୍ତୁ ଆଜ୍ଞା କାଶ୍ମୀର ସୀମାରେ, କୋରିଆ ଯୁଦ୍ଧ କ୍ଷେତ୍ରରେ ମାର୍କିନ ସରକାର କିପରି ଲକ୍ଷ ଲକ୍ଷ ଲୋକ ହତ୍ୟା କରୁଛନ୍ତି ଅଥଚ ଋଷିଆ ବିଶ୍ୱର ମଙ୍ଗଳପାଇଁ କୃତ୍ରିମ ଉପଗ୍ରହରେ

ପ୍ରେରଣ କରୁଥିବା 'ଲାଇକା' ମୃତ୍ୟୁରେ ମାର୍କିନ ଓ ବ୍ରିଟିଶ୍ ଲୋକେ ଯେ କୁତ୍ସିତ ପ୍ରଚାର ଚଳାଇଛନ୍ତି ତାର କି ଚମତ୍କାର ଉତ୍ତର ଲେଖିଅଛି ଦେଇଛୁ । ପୁଂଜିବାଦ ଦଲାଲମାନଙ୍କୁ ଏ ଗୋଟାଏ ସମୟୋପଯୋଗୀ ଜବାବ । ବେଶ୍ ଚମତ୍କାର ପ୍ରିଂଟିଙ୍ଗ୍ । ମୋଟେ ଚାରି ଅଣା ଦାମ୍ ।"

"ଆମେରିକା ଯେଉଁ ବହିଟି ଛପାଇଛି ତାର ଦାମ୍ ?"

"ମୂଲ୍ୟ ଧାରଣା ରଖିଛନ୍ତି କିନ୍ତୁ ପ୍ରକୃତରେ ଫ୍ରିରେ ଦେଉଛନ୍ତି ।" ଅଜୟ ମନେ ମନେ ହସିଲେ । କିଏ ଭଲ ? ମାର୍କିନବାଲା ତାକୁ ହେଲେ ରହିଥିବାଲା ତଣ୍ଟି କଟା । କିଏ ହଙ୍ଗେରୀରେ ମଣିଷ ଶିକାର କରୁଛନ୍ତି ତ କିଏ ମଣିଷର ଧନ, ମାନ, ସମ୍ମାନ ସହିତ ଛୋଟିଆ ରଣକ୍ଷେତ୍ରରେ ଖେଳୁଛି ରକ୍ତର ହୋରିଖେଳ । ସୁବିଧା ଦେଖି ନିଜକୁ ଭଲଲୋକ ବୋଲି ସମସ୍ତେ ତାରିଫ ଦେଇଛନ୍ତି । ଯୁବକଟିକୁ ବ୍ୟଙ୍ଗ କରି କ'ଣ କହି ଆସୁଥିଲେ ହଠାତ୍ ପୁଣି ଚୁପ୍‌ହେଲେ । ସେ କଣ ଜାଣେ ତାକୁ କହି ଲାଭ ? ସେ କଣ କହିବ ମାର୍କ୍ସ କିଏ ? ଏଂଗେଲସ କିଏ ? ସେ କେବଳ ଜଣେ କ୍ୟାପିଟାଲ୍ ଗୋଟାଏ ମୋଟା ବହି । ସେଥିରୁ ମୋଟେ ଚାରିଖଣ୍ଡ ହେଲେ ବ୍ୟାଗ ତାର ଭରିଯାଏ ।

ବହିଟି ଉପରେ ଥରଟିଏ ଆଖି ବୁଲାଇ ଆଣି ଅଜୟ କହିଲେ ନା ଦରକାର ନାହିଁ । ଯୁବକଟି ଅଜୟଙ୍କ ମୁହଁରୁ ବେଶ୍ ବୁଝିଲା ଏ ବହି କିଣିବା ଲୋକ ନୁହନ୍ତି । ଧୀର ପଦକ୍ଷେପରେ ସେ କକ୍ଷମଧ୍ୟରୁ ବାହାରି ଗଲା । ମୁହଁରେ ନୈରାଶ୍ୟର ଛାୟା ସ୍ପଷ୍ଟ ଅନୁମିତ ହେଉଥିଲା ।

ବାହାରେ ବର୍ଷା । ଅଜୟ ଲାଇଟି ଦେଇ ପୁଣି ପଢ଼ି ବସିଲେ । ଦୁଇଟି ପୃଷ୍ଠା ପଢ଼ିଛନ୍ତି ହଠାତ୍ ଶୁଣିଲେ 'ଟେଲିଗ୍ରାଫ୍ ଅଛି

ଖୋଲ ତ ।" ଅଜୟ ଦ୍ୱାର ଖୋଲି ଦେଖିଲେ ସେଣ୍ଡି ପୁରୁଷଟି ଲୋକଟି । ମଧ୍ୟଭଳିଆ ସ୍ୱାସ୍ଥ୍ୟ । ବାମ ଗାଲ ଉପରେ କଳା-ଯାଇମଣ୍ଡା । ଦେହରେ ଖଦଡ଼ ପଂଜାବୀ । କାନ୍ଧରେ ଲମ୍ବା ବ୍ୟାଗ୍ । ହାତରେ ଭୂଦାନ ବହି କୋଇଖଣ୍ଡ......ତାଙ୍କୁ ବୃଦ୍ଧ କୁହାଯାଇ ପାରିବ ନାହିଁ ତେବେ ସେ ବି ଯୁବକ ନୁହନ୍ତି ।

'ଶୈଳେନ୍ଦ୍ର ନାହାନ୍ତି ?'

'ନା—ନାହାନ୍ତି ।'

ଭୂଦାନୀ ଆଉ କିଛି ନ କହି ଟେବୁଲ ଉପରେ ପଡ଼ିଥିବା କାଗଜଟା ଉପରେ ଆଖିବୁଲାଇ ଚାଲିଥାନ୍ତି । ଅଜୟ ପୂର୍ବପରି ବହିକୁ ଚାହିଁଲେ, କିଛି ସମୟ ପରେ ଭୂଦାନୀ କହିଲେ ଆସିଥିଲି—ଭୂଦାନ ଉପରେ କିଛି ଆଲୋଚନା କରିବାକୁ ।

'ନା ସମୟ ନାହିଁ, କାଲି ପରୀକ୍ଷା କ୍ଷମା କରିବେ ।' ବିନୟ ଭାବରେ ଅଜୟ ଉତ୍ତର ଦେଲେ ।

"ହେଉ ତେବେ ଏଇ 'ଭୂଦାନ' କୋଇଖଣ୍ଡ ରଖନ୍ତୁ ଶୈଳେନ୍ଦ୍ରଙ୍କୁ ଦେଇଦେବେ" କହି ସେ ଚାଲିଗଲେ । ସେ ଚାଲିଯିବା ପରେ ଅଜୟ ମନେ ମନେ ଗୁଡ଼ାଏ ହସିଲେ । କହିଲେ ଭୂ ଥିଲେ ସିନା ଦାନ ପ୍ରଶ୍ନ ଉଠୁଛି । କିନ୍ତୁ ଯାର ମୁଣ୍ଡ ଗୁଂଜିବାକୁ ଗୃହଟିଏ ଖଣ୍ଡେ ନାହିଁ ସେ ଭୂଦାନ କଥା ଆଲୋଚନା କରି ଲାଭ ? ସେତିକି ଥିଲେ ତ ସେ କେଉଁଦିନୁ ଭୂଦାନୀ ହୋଇ ସାରନ୍ତେଣି । ସେ ଦଳରେ ଯୋଗଦେବା ପାଇଁ ତ କିଛି 'ସାଧନା ଲୋଡ଼ା ନାହିଁ । ଜମି ଯଦି ଅଛି ଦାନ କରିବାର ଇଚ୍ଛା ନାହିଁ, ତେବେ ସେତିକ ବିକି ବ୍ୟାଙ୍କରେ ଟଙ୍କା ଜମା କରି ଯାଇ ଭୂଦାନ କର । ବିନୋବା ତ କହିଛନ୍ତି ଦଳଗତ ନିର୍ବିଶେଷରେ କିଛି ନୂତନ କଥା ଆଲୋଚନା କରିବା ପାଇଁ ଏ ହେଉଛି ପ୍ରଶସ୍ତ

ଫେସନ । କିଏ କଂଗ୍ରେସ ଦଳରୁ ନିର୍ବାଚନ ଟିକେଟ ନ ପାଇ ଫେରିଛନ୍ତି । କିଏ ଫେରିଛି କମ୍ୟୁନିଷ୍ଟ ଦଳରୁ କମ୍ୟୁନିଷ୍ଟଙ୍କ ପ୍ରଭାବ କମିଛି ଦେଖି । କିଏ ଆସିଛି ଆଶ୍ରମ ସ୍କୁଲ କ୍ୟାସ୍ ଖାଇ, କିଏ ଘରେ ଅପଣାର ଗୃହିଣୀଙ୍କ ଧମକ ସହି ନପାରି ସବୁ କାଉଣ୍ଟର-ଫିଟ୍‌ମାନଙ୍କର ଏତ ଗୋଟାଏ ଅଡ୍ଡା । ତେବେ ଅଜୟ ତ ସେମାନଙ୍କ ଠାରୁ ବହୁ ଊର୍ଦ୍ଧ୍ୱରେ । ସେ ଚାହିଁଲେ ତାଙ୍କୁ ବିନୋବା ଦଳରେ ନ ନେବେ କାହିଁକି ?

'କଣ ବାବୁ ଖିଅର ହେବେ ?' ପଚାରିଲା ବାରିକ ଲିଂଗରାଜ ପ୍ରଶ୍ନ କଲା । ଅଜୟଙ୍କ ଭାବନା ହଠାତ୍ ବନ୍ଦ ହୋଇଗଲା । ଅଜୟ ତାର ଉତ୍ତର ନଦେଇ ହସି ହସି ପ୍ରଶ୍ନ କଲେ । ହଇ'ରେ ଏମିତ ବୁଲି ବୁଲି କେତେ ଦିନ ଆଉ ରୋଜଗାର କରୁଥିବୁ ? କେତେ ମିଳୁଛି ? ଯାଇ ଭୂଦାନ କରୁନା ?

"ଆମ ଗରିବଙ୍କୁ ଆଜ୍ଞା ସେଥିରେ ନେବ କିଏ ? ସେ ସବୁ ବଡ଼ ବଡ଼ଆଙ୍କ କଥା ।"

"ନା'ରେ ଏସବୁ ତୁମରି ପାଇଁ ।"

ହେଉ ଏବେ ହେଲା । ଏଥିରେ ମିଶିବା ପାଇଁ ମୁଁ ପଇସାପତ୍ର ପାଇବି କେଉଁଠୁ ?

'ନା ଏଥିପାଇଁ ପଇସାର ମୋଟେ ପ୍ରୟୋଜନ ନାହିଁ ।'

'ତେବେ କଣ କରିବି କିପରି ମିଶିବି ?'

'ପ୍ରଥମେ ଦାଢ଼ି ଛାଡ଼ ! ଏହି କାଠ ଉବାନ୍ତି ଛାଡ଼ ଗୋଟାଏ ଲମ୍ବା ବ୍ୟାଗ୍ ଧରି ବୁଲ । ସାବଧାନ, ସବୁବେଳେ କେବଳ ସ୍ୱଦେଶୀ କଥା କହିବୁ । ଖାଣ୍ଟି ଉପଦେଶ ଦେବୁ ।'

ହଁ ଆଜ୍ଞା ସେ କଥା କରି ପାରିବି, ହେଲେ ଘରେ ମୋ ପିଲାପିଲି ବଂଚିବେ କିପରି ?

'ତୁମର ତ କଣ୍ଟୁ ଜମି ଥିବ । ସେଥିରୁ ଯେଉଁ ଆୟ ହେବ ଅବା ତୁମର ଯଦି କେହି ରୋଜଗାରିଆ ଭାଇ ଥିବେ ତାଙ୍କ କମାଇ ତୁମ ପିଲାପିଲିଙ୍କୁ ଛାଡ଼ିଦେଇ ଯିବାକୁ ହେବ । ନେତା ହେବା ପାଇଁ ଏତକ ଅନ୍ତତଃ ଥିବା ଦରକାର ।'

ସେତକ ଥିଲେ ମୋର ଚିନ୍ତା ପଡ଼ିଥାନ୍ତା କାହିଁକି ? ମୋଟେ ଆପଣ ଚାହିଁଥାନ୍ତେ ଅବା କାହିଁକି ? ଜମି କଥା ଥାଉ । ଖଣ୍ଡେ ଗୋଟାଳିଆ ଥୋଇବା ପାଇଁ ମୋର ନଜର ଜାଗା ଟିକେ ନାହିଁ । ଭାଇ କଥା ଯାହା କହିଲେ ସତ କଥା । ହେଲେ ସେ ଭାଗ୍ୟ ମୋର କାହିଁ ? ମୋ ସାନ ଭାଇଟିକୁ ଯେତେବେଳେ ମୋଟେ ବାର ସେତେବେଳେ ସେ ଖାଇବାକୁ ନ ପାଇ ରୋଗରେ ମଲା । ଅଙ୍ଗ ବୁଝୁଛି କେଡ଼େ ସ୍ୱାର୍ଥପର ସିଏ । ଆମେ କ୍ଷୁଧାର ଦାଉ ବରଦାସ୍ତ କଲୁ । ସେ କଲା ନାହିଁ । ଭାରି ଚାଲାକ ସେ ! ମୁଁ ହୁଏତ ଦିନେ ଘରର ଦାୟିତ୍ୱ ତା ଉପରେ ଦେଇ ନେତା ହୋଇ ନାମ କରିନେବି, ସେଥିପାଇଁ ସେ ଚାଲିଗଲା । ସତେ ବାବୁ ଭାଇଠୁ ବଳି ବଡ଼ ଶତ୍ରୁ ଆଉ କେହି ନାହିଁ ।

ଅଜୟ ଆଉ ସମ୍ଭାଳି ପାରିଲେ ନାହିଁ । ଲିଂଗରାଜ କଥା ଶୁଣି ହସି ଉଠିଲେ । ବାରିକ ହସ ଚାପି କହିଲା କୁହନ୍ତୁ ବାବୁ କ'ଣ ବାଳ କାଟିବେ ନାଁ ମୁଁ ଯିବି ? ଅଜୟ ମୁହଁରେ ହାତ ବୁଲାଇ ଆଣି ହସି ହସି କହିଲେ । ନା' ଥାଉ । ଆଉ ଦାଢ଼ି କାଟିବ ବି ଭୂଦାନରେ ମିଶିବ ବୋଲି ସ୍ଥିର କରିଛୁ । ଲିଂଗରାଜ ସେ କଥା ଶୁଣି କଣ ଗୋଟାଏ ଉତ୍ତର ଦେଲା, ସୋ ଶୁଣି ପାରିଲେ ନାହିଁ । ହଠାତ୍ ଆଲାରମ୍ ବାଜି ଉଠିଲା— ଦେଖିଲେ ଘଣ୍ଟାରେ ବାରଟା ।

---

* "ଡଗର"
ଚତୁର୍ବିଂଶ ବର୍ଷ-ଦ୍ୱାଦଶ ସଂଖ୍ୟା



# ନବଜାତକ

ଗୋଟାଏ କପ, ଗୋଟାଏ ସାନ ଗ୍ଲାସ ଓ ଖଣ୍ଡେ ସାବୁନ ମାଗନ୍ତୁ… । ଡେରି କରନ୍ତୁ ନାହିଁ । ନର୍ସଙ୍କ ନିର୍ଦ୍ଦେଶ । ବସନ୍ତର ନିର୍ଦ୍ଦେଶ ମାନିବା ବ୍ୟତୀତ ସତେ ଯେପରି ପଚାରିବା ଲାଗି ଅନ୍ୟ କିଛି ପ୍ରଶ୍ନ ନ ଥିଲା । ମାଧବୀ ଯେ କେଇଟି ମିନିଟମଧ୍ୟରେ ନୂତନ ସନ୍ତାନଟିଏ ପ୍ରସବ କରି ତାଙ୍କୁ ପିତା ହେବାର ଗୌରବରେ ଗୌରବାନ୍ୱିତ କରିବ ସେ କଥା ସେ ଚିନ୍ତା କରୁ ନ ଥିଲା । ନବାଗତ ବିଷୟରେ ସେ ସମ୍ପୂର୍ଣ୍ଣ ବିସ୍ମୃତ ଥିଲା ।

ସେ ଚିନ୍ତିତ ଥିଲା ମାଧବୀ ଲାଗି । ଦୀର୍ଘଦିନ ଦୁଇଟି ଧରି ହୋଇଥିବା ପ୍ରସବ ଯନ୍ତ୍ରଣା ସାଙ୍ଗ ହେବ । ଲାଲ୍ ଟୁକୁଟୁକୁ ଶିଶୁଟିକୁ ଦେଖି ମାଧବୀ ଓଠରେ ଫୁଟି ଉଠିବ ହସ । ସେ ଯଥେଷ୍ଟ ସାନ୍ତ୍ୱନା ଲାଭ କରିବ । ମା ହେବାର ଯେ ଚରମ ଅଭିଳାଷ ତାର ପୂର୍ଣ୍ଣ ହେବ । ମାଧବୀର ସ୍ୱପ୍ନ ସାର୍ଥକ ହେବ । ବସନ୍ତର କାନ୍ତୁ

ପ୍ରୟୋଜନ ନାହିଁ ଶିଶୁ । ସେ ଚାହେଁ ମଧ୍ୟ ତାର ଫେରିଆସୁ ଘରକୁ ଖୁବ୍ ଭଲରେ, ଦେବତା ଆଶୀର୍ବାଦ କରନ୍ତୁ ।

କିନ୍ତୁ ମାଧବୀ । ସେ ତ 'ଶିଶୁ ସଦନ'କୁ ଯାଇନାହିଁ ନିଃସ୍ୱ ଭବେ ଏକାକୀ ଫେରିବାକୁ । ସେ ଚାହେଁ ମଳୟ ଯେତେବେଳେ ବହୁଛି ବୃକ୍ଷ ଦିଗନ୍ତ ପୁଷ୍ପିତ ହେଉ । ଦରମ୍ପୁଲିତ କୁମୁଦ ପ୍ରସ୍ଫୁଟିତ ହେଉ । ବୀଣା ତାରରେ ସୃଷ୍ଟି ହେଉ ଶତ ସ୍ପନ୍ଦନର ମୂର୍ଚ୍ଛନା ।

ବସନ୍ତ......ଜୀବନରେ କି ବିରାଟ ପରିବର୍ତ୍ତନ । କେଇଟି ମିନଟ ମଧ୍ୟରେ ସେ 'ଶିଶୁ ସଦନ'କୁ ଆସି ଶୁଣିବ ସେ ଗୋଟିଏ ଶିଶୁର ପିତା ହୋଇଛି । ମଧୁର ଆଶଙ୍କା ଆଶଙ୍କାରେହିଁ ରହିଯାଇଛି । ଯେଉଁ ଶିଶୁଟି ଅନ୍ତ ଫାଡ଼ି ଜନ୍ମ ନେଇଛି ସେ ହୋଇଛି ଅବିକଳ ତାର ନିଜ ରଙ୍ଗପରି ଗୌରବର୍ଣ୍ଣର । ନର୍ସ କେବେ ତା ଶିଶୁଟିକୁ ଅନ୍ୟ କେଉଁ ପିଲା ସଙ୍ଗେ ବଦଳାଇ ଦେଇନାହିଁ । ସେ ନବାଗତ ସଙ୍ଗେ ଫେରିବ ଗୃହକୁ । ସେ ଯେ ଏକାକୀ 'ଶିଶୁ ସଦନ'ରୁ ଫେରିଲା, ପରିହାସ କରିବା ଲାଗି ସ୍ୱାମୀଙ୍କ ବନ୍ଧୁ ତାର ଆଜି ଅବସର ପାଇବେ ନାହିଁ ।

ବସନ୍ତ ଆଗକୁ ପଛକୁ ଆଖିରେ ଚାହିଁଲା । ଆକର୍ଷଣ ଶୂନ୍ୟ, ନିର୍ଲୋଭ ଆକାଶ । ନର୍ସ ପଚାରିଲା କ'ଣ ବାବୁ ଆପଣ ଏପର୍ଯ୍ୟନ୍ତ ଖାଇ ନାହାନ୍ତି ? ଜିନିଷ ସବୁ କାହା ହାତରେ ପଠାଇଲେ ? ଡେରି କରୁଛନ୍ତି କାହିଁକି ? ବସନ୍ତ ଚୁପଚାପ ଶିଶୁ ସଦନର ବାରଣ୍ଡାରୁ ଓହ୍ଲାଇ ଓହ୍ଲାଇ ପ୍ରଶ୍ନ କଲା 'ଲକ୍ସ ସାବୁନ' ହେଲେ ଚଳିବ ?

ଯାହା ଅଛି ଅଶାନ୍ତ । ବସନ୍ତ ଆଗକୁ ବଢ଼ିଲା । ମୁଁ ପଛେ ପଛେ ଚାଲିଥାଏ । ମେଘାଚ୍ଛନ୍ନ ଆକାଶ । ଚନ୍ଦ୍ର ସ୍ପଷ୍ଟଭାବେ ଦେଖା ପଡ଼ୁନଥିଲେ ମଧ୍ୟ ଆକାଶ ସମ୍ପୂର୍ଣ୍ଣ ତମସାଚ୍ଛନ୍ନ ନଥିଲା ।

ବସନ୍ତ ତନ୍ଦ୍ରାବୋଳା ନୟନରେ ଚାହିଁଲା··· ବାତାୟନ ରେଲିଂ ଫାଙ୍କେ ଫାଙ୍କେ ଲୋହିତ ରଶ୍ମିର ଉତ୍ସବ। ରଜନୀର ଶେଷ ପ୍ରହରରେ ସେ ଶଯ୍ୟା ଯାଇଥିଲା। ତନୁରୁ ତାର କ୍ଳାନ୍ତି ଅପସରି ଯାଇନାହିଁ। ସେ ଘଡ଼ିକୁ ଚାହିଁଲା ନଅ ବାଜିବାକୁ ଘଣ୍ଟାରେ ଅଛି ଆଉ ମୋଟେ ପନ୍ଦର ମିନିଟ।

ସେ ସିଧାଯିବ ଅଫିସ···ନା ଯିବ ଶିଶୁସଦନକୁ। ସେ ମାଧବୀକୁ ଯାଇ ଦେଖିବ···ଦେଖିବ ପ୍ରବଳ ଝଡ଼ ତୋଫାନ ପରେ ଆକାଶ କପର ସ୍ୱଚ୍ଛ ହୋଇ ପଡ଼ିଛି, ମୃତ୍ତିକା ତଳୁ ଅଙ୍କୁରଟି ମୁଣ୍ଡ ଟେକି ଉଠିଛି। ସେ ବ ଧନେ ତାର ଆସ୍ଥାନ ଜମାଇ ବସିବ। ସେ ମାଧବୀକୁ ସହାସ୍ୟ ବଦନରେ କହିବ ପିଲାଟି ଆମର ଖୁବ୍ ଚମତ୍କାର ହୋଇଛି। ଅବିକଳ ତୁମରି ରଙ୍ଗର। ତୁମରି କପାଳ ପରି କପାଳ, ମୁହଁ ପରି ମୁହଁ।

ବସନ୍ତ ପକେଟରେ ହାତ ମାରିଲା। ଗୋଟିଏ ମାତ୍ର ଦଶଟଙ୍କିଆ ନୋଟ ଓ ଆଉ କେଇଟି ନୂଆପଇସା। ମାସିକ ଦୁଇଶତ ଟଙ୍କା ଦରମାରୁ ଏଇ ମାତ୍ର ଅବଶେଷ। ମାଧବୀର ପ୍ରସବ ନିମନ୍ତେ 'ଶିଶୁସଦନ'ରେ ସ୍ଥାନଟିଏ ପାଇଛି। ସେଥି ନିମନ୍ତେ ପଚିଶିଟି ଟଙ୍କା ଉପୋଜାଟ କରିବାକୁ ହେବ। ପିଲା ଲାଗି ଗ୍ଲେଟ ଜାମା, ଔଷଧ, ସ୍ତ୍ରୀ ଲାଗି ହେଲେ ସ୍ଲିପର ନ ହେଲେ ନ ଚଳେ। ପୁରୁଣା ସ୍ଲିପର ଆଉ ପିନ୍ଧାଯାଇ ପାରିବ ନାହିଁ। ଷ୍ଟ୍ରାପ ମରାମତି ପରେ ସେ ଆଉ ପିନ୍ଧାଯୋଗ୍ୟ ହୋଇ ପାରିବ ନାହିଁ। ଅତି କମରେ ଚାଳିଶ ଟଙ୍କା ନ ହେଲେ ନ ଚଳେ।

ହେଉ ଯାହାହେଉ ଏବେ କୌଣସି ମତେ ଯାଇ ସେ ଶିଶୁସଦନରେ ମଧୁକୁ ସାକ୍ଷାତ କରି ଆସିବ। ପିଲାଟିକୁ କାନ୍ଥ ପଟକୁ ନ ଶୁଆଇବା ଲାଗି ମୁରବୀକରି କଣ୍ଠରେ ନିର୍ଦ୍ଦେଶ ଦେବ। ଶିଶୁସଦନର

କର୍ମଗୃହ ଓ ନର୍ସମାନଙ୍କୁ ହସ ହସ ମୁହଁରେ କୃତଜ୍ଞତା ଜ୍ଞାପନ କରିବ । ବାହାରେ ଫେରିଲାବେଳେ ଯଦି କୌଣସି ବନ୍ଧୁଙ୍କୁ ଭେଟିବ ତେବେ ରିକ୍‌ସାରୁ ଓହ୍ଲାଇ କହିବ···ଭାଇ ମୋର ଗୋଟିଏ ପୁଅ ହୋଇଛି । ମା ଓ ଶିଶୁ ଭଲରେ ଅଛନ୍ତି । ବିଶେଷ ଅସୁବିଧା ହୋଇନାହିଁ । ସ୍ତ୍ରୀ ମୋର ସାମାନ୍ୟ କଷ୍ଟ ପାଇଲା ପରେ ପିଲାଟି ଜନ୍ମ ହୋଇଛି । ଜନ୍ମବେଳକୁ ଛ'ଟାକୁ କେଇ ମିନଟ ବାକିଥିଲା । ସକାଳ ଲୋକାଲ ଆସି ପହଞ୍ଚି ନଥିଲା ।

କିନ୍ତୁ ସମୟ କାହିଁ ? ଏତେ କମ୍ ସମୟ ମଧ୍ୟରେ ସେ ଏତେ କାମ କରିବ କିପରି ? ମଧୁପାଇଁ ନହେଲେ ବି ପିଲାଟିକୁ ବଞ୍ଚାଇବାକୁ ହେବ । ତାକୁ ସେ ମଣିଷ କରିବ । ସେ ଜୀବନରେ ଯାହା କରି ପାରିଛି ସେ ଦେଖିବ ତାର ଶିଶୁ ଦୁନିଆରେ ମଣିଷ ହୋଇ ସେକଥା କରିପାରିଛି । ମୁଣ୍ଡ ତାର ଦୂରିଗଲା । ହଠାତ୍ ସେ ହିସାବ ନିକାଶ କରି ଦେଖିଲା ସେ ଆଜି ମଣିଷ ହୋଇ ନାହିଁ । ସେ ପାଲଟିଛି ଅର୍ଥନୀତିର ଏକ ଗବେଷଣାର ତଥ୍ୟାଗାର ।

ବସନ୍ତ ଆଗକୁ ସାଇକେଲ ଚଳାଇଲା, ହଠାତ୍ ଦେହ ତାର ଥରି ଉଠିଲା । ସେ ଅନୁଭବ କଲା ସତେ ଯେପରି ଅଫିସର ତାକୁ ବିଳମ୍ବର କାରଣ ପଚାରୁଛନ୍ତି । ତାର ଦେଇଥିବା ଉତ୍ତରରେ ଅଫିସର ବିଶ୍ୱାସ କରି ପାରୁ ନାହାନ୍ତି । ସେ କହୁଛନ୍ତି ହଁ ପିଲା ଜନ୍ମ ହେଲା ସେଥୁ ହେଲା କ'ଣ ? ସେଠି ତମର ଉପସ୍ଥିତିର କ'ଣ ପ୍ରୟୋଜନ ଥିଲା । ମୋର ସାନ ପିଲାଟି ଜନ୍ମ ହେଲାବେଳକୁ ସ୍ତ୍ରୀ ମୋର କେତେବେଳେ ଡାକ୍ତରଖାନା ଯାଇଛନ୍ତି ମୁଁ ଜାଣେନା ।

ବସନ୍ତ ସାଇକେଲରୁ ଓହ୍ଲାଇ ଠିଆହେଲା । ମନେ ମନେ ଭାବିଲା ସତେ ସେ ଡାକ୍ତରଖାନା ଯାଇ ଥାଆନ୍ତେ କାହିଁକି ? ବଡ଼ବାବୁ ଡାକ୍ତରଖାନା ନ ଯାଇ ମଧ୍ୟ ବାବୁଆଣୀଙ୍କ ପୁଅ ହେଲା । ବିନା

କଷ୍ଟରେ ପ୍ରସବ । କିନ୍ତୁ ଏଥିପାଇଁ ଘରେ ସିଅନ କାମ କରୁଥିବା କନେଷ୍ଟବଲ୍ କେଇ ଜଣ ଯେ କି ଯନ୍ତ୍ରଣା ପାଇଛନ୍ତି ସେକଥା କ'ଣ ବାବୁ ବୁଝନ୍ତି ? ସେ ମନେ ମନେ ଠିକ୍ କଲା । ସତରେ ବାବୁ ଯଦି ଅଫିସରେ ଏହିପରି ପ୍ରଶ୍ନ କରନ୍ତି, ତେବେ ସେ ସିଧା ତାଙ୍କ ମୁହଁରେ ଶୁଣାଇ ଦେବ, ସାର୍ ଆପଣଙ୍କ ସ୍ତ୍ରୀଙ୍କ ପରି ମୋ ସ୍ତ୍ରୀ ଡାକ୍ତରଖାନାରେ ପରିଚିତ ନୁହନ୍ତି । ପିଲା ଜନ୍ମ କରିବା ଲାଗି ସେ ପୂର୍ବରୁ ତାଲିମ ପାଇ ନଥିଲେ । ଏଇଟି ମୋର ପ୍ରଥମ ପିଲା । ମୋତେ ବାଧହୋଇ ତାଙ୍କୁ ଡାକ୍ତରଖାନାରେ ଜଗି ରହିବାକୁ ପଡ଼ିଲା ।

କିନ୍ତୁ ଏ କ'ଣ ଗୃହକର ରହିବା ଉତ୍ତର । ନାଁ ସେ କିଛି ନ କହି ନୀରବ ରହିବ । ଚୁପ୍‌ଚାପ ଅଫିସ କାମ କରିବ । କାମ ସରିଲେ ଆଉ ଯାହା । ବସନ୍ତ ବେଶ୍ ବୁଝିଲା ଅନଶନ ବା ହରତାଳ ଧମକ ଦେଇ ଦାବୀ ପୂରଣର ସିଦ୍ଧ ଅଖାଡରେ କବର ପାଇ ଯାଇଛି । ଛୋଟ ଜୀବନର ଗୁଡ଼ିଏ ଖିଅ ଛୁଟି ଯାଇଛି । ତେଲ ଲୁଣର ସଂସାରରେ ଦାବୀ, ପ୍ରସ୍ତାବ ପ୍ରତିଶ୍ରୁତିର ପ୍ରଶ୍ନ ଉଠୁ ନାହିଁ । ବଞ୍ଚିବାକୁ ହେଲେ ଏଠି କୋଡ଼ା ପଇସା, କଞ୍ଚା ପଇସା, ପଇସା ହେଉଛି ଷଷ୍ଠ ଇନ୍ଦ୍ରିୟ । ତାର ଅଭାବ ହେଲେ ଅନ୍ୟ ପାଞ୍ଚ ଗୋଟି ଇନ୍ଦ୍ରିୟ ଅକର୍ମଣ୍ୟ ହୋଇ ପଡ଼ନ୍ତି ।

ମାଧବୀ ଲାଗି ନହେଲେ ବି ପିଲାଟି ଲାଗି ତାକୁ ରୋଜଗାର କରିବାକୁ ହେବ । ବସନ୍ତ ମୋତେ କହିଲା ବୁଝିଲୁ ଭାଇ ଜୀବନଟା ଏତେ ସହଜ ନୁହେଁ । ଅଭାବ ଓ ପ୍ରୟୋଜନ ମଧ୍ୟରେ ଧନକୁ ଧନ ମଣିଷ କପରି ଅଣନିଶ୍ୱାସୀ ହୋଇ ପଡ଼େ ତୁ ଘର ସଂସାର ନ କଲେ ବୁଝି ପାରିବୁ ନାହିଁ । ଅବଶ୍ୟ ଶୁଣି ଶୁଣି ତୁ ବେଶ୍ ଭଲ କାହାଣୀ ଲେଖିପାରୁ । ତୁ ବୁଝିପାରିବୁ ନାହିଁ । ବର୍ତ୍ତମାନ ମଧ୍ୟ ଅପେକ୍ଷା ପିଲାଟି ମୋର କେତେ ଚନ୍ଦ୍ରାର ବୟସ୍କ ହୋଇଛି ।

ମୁଁ କିଛି ନକହି ଚୁପ୍ ରହିଲି । ମୋର କେବଳ ମନେ ପଡୁଥାଏ, ବସନ୍ତର ମଧୁ ଉଦ୍ଦେଶ୍ୟରେ ଲେଖା ଗୋଟିଏ ପୁରାତନ ଚିଠିର କେଇଟି ଧାଡ଼ି । "ପ୍ରାଣର ମଧୁ, ଭୁଲ୍ ବୁଝିବନି, ତୁମକୁ ମୁଁ ପ୍ରତାରଣା କରିବି ଏ ଆଶଙ୍କା ତୁମ ମନରେ ଉଙ୍କି ମାରିଲା କିପରି ? ମୋଲାଗି ତମେ ବହୁତ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କଲ, ହଦୀ ଫେରିଲ... । ସେ ସବୁ ଲେଖିବାର କୌଣସି ମାନେ ନାହିଁ । ମୁଁ ଥରେ ଯାହା କହୁଛି ସେ କଥା ନିଶ୍ଚୟ ରଖିବି । ବିଳମ୍ବ ହୋଇପାରେ କିନ୍ତୁ ନହେବା ପ୍ରଶ୍ନ ମୋଟେ ଉଠୁନି । ତୁମଲାଗି ଯେ କୌଣସି ସାମାଜିକ ସମସ୍ୟାର ସମ୍ମୁଖୀନ ମୁଁ ହୋଇ ପାରିବି । ଆଜି ଏତିକି ।"

ଦୁନିଆର ନିୟମ । ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଦୁନିଆ ଚକ ଏମିତି ଘୂରେ ସ୍ୱାମୀ ପିତୃତ୍ୱ ଲାଭ କରିସାରିଲା ପରେ ତା'ର ସ୍ନେହ-ସହାନୁଭୂତି ପତ୍ନୀ ଆଉ ସନ୍ତାନ ମଧ୍ୟରେ ଭାଗ ଭାଗ ହୋଇଯାଏ ।

କାଲିପରି ଲାଗୁଛି । ବସନ୍ତର ବାହାଘର । ତା' ବାହାଘରକୁ ସେ ମୋତେ ନିମନ୍ତ୍ରଣ ଦେଇ ନଥିଲା । କାରଣ ନିମନ୍ତ୍ରଣ ଛାପିବା ଆଉ ବାଣ୍ଟିବା ଦାୟିତ୍ୱ ଥିଲା ମୋ ଉପରେ । ଆଜି ଠିକ୍ ମନେ ପଡୁଛି... ବାହାଘର ପୂର୍ବରୁ ଜୋର ଅସରାଏ ବର୍ଷା ହୋଇ ରାସ୍ତା କାଦୁଅ ହୋଇ ଯାଇଥିଲା । ବର୍ଷକ ତଳର କଥା

(ତିନି)

କଣ ଶୁଭୁଛି ? ମନେକର ବାବୁଲାଗି ଯୋତା ଆଣିବ । ଗୋଟାଏ ଇଂରେଜୀ ଅକ୍ଷର ଶିକ୍ଷା ଗ୍ରନ୍ଥ ଆଣିବ । ମୋ ଲାଗି ଶାଢ଼ୀ ଆଣିବା ଦରକାର ନାହିଁ । ଆମ ଘଣ୍ଟ ଦେଇଁ ଶାଢ଼ୀ

ଦ୍ଧାଇ ପଠାଇଥିଲେ, ମୁଁ ସେଠା ବ୍ୟବହାର କରିବ । ତମେ ତମ ଲାଗି ମନେକର କୋର୍ଟକନା ଆଣିବ । କୋର୍ଟା କରିବ କରିବ ହୋଇ ଏବର୍ଷ ଶୀତ ଗୃଲଯିବ । ବସନ୍ତ ଅଧିକ କିଛି ନକହି କେବଳ ମୁଣ୍ଡ ହଲାଇଲ ।

ବସନ୍ତ···ମାଧବୀ । ସୃଷ୍ଟିର ଦୁଇ ବୈଶିଷ୍ଟ୍ୟ । ପରସ୍ପର ଚେଷ୍ଟାକରନ୍ତି ଅପରକୁ ଜଣାଇ ନ ଦେବା ଲାଗି ଯେ ନିଜେ ଅଜ୍ଞାତ ମଧ୍ୟରେ ଅଣନିଃଶ୍ୱାସୀ ହୋଇଗଲଣି ।

ସେଦିନ ମୁଁ ପଚାରିଲି ମାଧବୀଦେବୀ "ବାବୁ ତା ମାମୁଁଘରକୁ କେବେ ଯାଉଛନ୍ତି ? ତା' ଜନ୍ମ ପୂର୍ବରୁ ଯିବାଲାଗି ଏତେ ବ୍ୟସ୍ତ ହେଉଥିଲ । 'ଆଉ ଏଇନେ ଯାଇ ପାରୁନ । ସୁନାଦେହ ଭଲ ରହୁନାହିଁ । ତାକୁ ବରାବର ଡାକ୍ତର ଦେଖାଇବାକୁ ହେବ । ଆମ ଗାଁରେ ସେ ସୁବିଧା ନାହିଁ । ତା ବ୍ୟତୀତ ତମ ବନ୍ଧୁ ସାହେବ ଏଠି ଏକା ଚଳିବେ କିପରି ?

"ତମେ ଆସିବା ପୂର୍ବରୁ ଯେପରି ଚଳୁଥିଲେ ।" "ମୁଁ ଆସିବା ପରେ କ'ଣ ତାହାହେଲେ କିଛି ପରିବର୍ତ୍ତନ ହୋଇ ନାହିଁ ।"

"ମୁଁ ତ ସେପରି କିଛି ଲକ୍ଷ୍ୟକରି ପାରୁନ ।"

"କହିବ ।"

ନା ମୁଁ ସେକଥା ଶୁଣିବାକୁ ଚାହୁନ । ମୋର ଖାଲି ଗୋଟାଏ କଥା ମନେ ପଡ଼ି ବିହ୍ୱଳ ସୃଷ୍ଟି ହେଉଛି । 'କଣ ?'

'ମୁଁ ଭାବୁଥିଲି ପାଠୁଆ ଶାଠୁଆ ଝିଅ ବାପଘର ଛାଡ଼ି ଶାଶୁଘର ଆସିଲାବେଳେ ଇଂରେଜୀରେ କଣ ପଦେ ଅଧେ

ଲହୁ କାନ୍ଦବେ କାନୁ ଯେତେବେଳେ ଶୁଣିଲି ଗ୍ରାମାଫୋନ ପଡ଼ି ଗଲା ।

ଶାମୁକା ଜନମ ନଦୀ କୂଳରେ
ମୋ ଖୁଡ଼ୀ,
ମୋର ଜନମତ ବୃନ୍ଦାବନରେ
ମୋ ଖୁଡ଼ୀ ।

କ ଓଲ୍ଡ୍ ଟେଷ୍ଟ । ସେ ସବୁ ଶୁଣି ମୁଁ ଚଞ୍ଚଳ ହେଲି । ସତ କହିଲି, ଦୁନିଆରେ ଡମ ନାରୀଙ୍କଠୁ ବଳି ବଡ଼ ଅଶ୍ଚର୍ଯ୍ୟ ଆଉ କଣ କହୁ ଅଛୁ ? ଏ ଘରକୁ ଅସିବା ଲାଗି ଯାଉ···ସେ ପୁଣି ଏଠୁ ଫେରିବାକୁ ଚାହେନ । ମାଧବୀଙ୍କ ମୁହଁକୁ ଚାହିଁଲି । ଓଠରେ ସାମାନ୍ୟ ହସ । କିନ୍ତୁ ଉତ୍ତର ଦେବାଲାଗି ସତେ ଯେପରି ପ୍ରସ୍ତୁତ ହେଉଛନ୍ତି । ମୁଁ କହିଲି ହିଁ···ହିଁ ··କଣ କହୁଥିଲି କୁହ···ବନ୍ଦ ହେଲି କାହିଁକି ?

ଏ ଉତ୍ତର ଗୌରୀଠୁ ବୁଝିବ ।

"ଗୌରୀ···ସେ କିଏ ?"

ଆଉ ବେଶି ଚାଲିକ ହୁଅନ୍ତୁନି । ସେ କିଏ ? ସତେ ଯେପରି ପୂଜା ତୁଳସୀଟିଏ । କିନ୍ତୁ ଜାଣନ୍ତି ନାହିଁ । ଆହାରେ ମରି ଯାଉଥେ । ସେ କିଏ ପୁଣି ଆପଣଙ୍କୁ କହିବାକୁ ହେବ । ଯାହାଙ୍କ ଲାଗି ଆପଣଙ୍କୁ ଦିନେ 'ଶିଶୁ ସଦନ'ର ଦ୍ୱାରସ୍ଥ ହେବାକୁ ହେବ । ଆଉ କଣ କହିଲେ ଶୁଝିଲ ନାହିଁ । ଟିକିଟି କାନ୍ଦ ଉଠିଲି ।

ମୁଁ ଚାହିଁ ରହିଥିଲି ମାଧବୀଙ୍କୁ, ସେ ଖୋଜୁଥିଲେ ଫିଡିଙ୍ଗ୍ ବଟଲ୍···।

---

ରବିବାର 'କଳିଙ୍ଗ"
ତା ୨୩ ଅପ୍ରେଲ ୭୧

# ମହାନଗରେ



ସେ ହଠାତ୍ ଭୟ କରି ଉଠିଲେ । ଏଟା କିଛି ନୂଆ ନୁହେଁ । ଅଧିକାଂଶ ସମୟରେ ରାତିର ମଧ୍ୟାହ୍ନରେ ମଦ୍ୟପ ରିକ୍ସାଚାଳକମାନେ ଏହିପରି ଅଶ୍ଳୀଳ ଭାଷାରେ ବଚସା ହୁଅନ୍ତି । ମଫସଲ ଜୀବନରେ ଏହିପରି ଗୋଟିଏ ଘଟଣାରେ ସାମାନ୍ୟ ଗୁରୁତ୍ୱ ଦିଆଯାଇପାରେ କିନ୍ତୁ ନଗରୀ ଜୀବନରେ ଏଥିରେ କୌଣସି ବିଶେଷତ୍ୱ ନାହିଁ ।

'କଣ ଶୁଭୁନି ? ଉଠମ୍, ଅରେ ଉଠ ।'

ମୁଁ କିଛି ନଶୁଣିଲା ପରି ପ୍ରତାରଣା କରି ପଡ଼ି ରହିଲି । କିନ୍ତୁ ଗୃହିଣୀର କଣ୍ଠରେ ଭୟ ଯାଇବାର ସୂଚନା ମୁଁ ସ୍ପଷ୍ଟ ଅନୁଭବ କଲି । ଆଉ ବିଳମ୍ବ ନକରି ପଚାରିଲି କଣ ହେଲା ? "ଶୁଭୁନ, ଶୁଣି ପାରୁନ ? କ ପାଟି । ଏଇଥିଲାଗି କୁହେ ଏକା ଡାକକରେ ଉଠ ବୋଲି । ପୁଅ ଦେହରେ ଟିକେ ହାତ ମାରିଦିଅ । ସେ ଉଠିବ ଯଦି !···ସ୍ତ୍ରୀଙ୍କ ସନ୍ତୋଷ ଲାଗି ମୁଁ ଯଦିଓ ପୁଅକୁ ଥାପୁଡ଼ାଇ ଦେଲି ଏ ଘଟଣାରେ ମୋଟେ ବିସ୍ମୟ ପ୍ରକାଶ ନକରି ପୁଣି ଶୋଇବାକୁ ଆରମ୍ଭ କଲି ।

"ଆରେ ଶୋଇ ପଡ଼ୁଛ କଣ ମ । ଟିକେ ଶୁଣ, ମୋତେ ଭାରି ଭୟ ଲାଗୁଛି···।" ମନେ ମନେ ଭାବିଲି ଏଇଥର ସତଟି ବାହାରିଲା । ରାତିରେ ଏମିତି ଯେତେ ଥର ଘଟିଛି ସ୍ତ୍ରୀ ମୋର ପ୍ରଥମେ ମୋତେ ଉଠାଇ କହନ୍ତି ପୁଅ ଦେହରେ ଟିକେ ହାତ ମାରିଦିଅ·· ସେ ଡରିବ । ଏଇଲେ ଉଠିଲେ ଆଉ ଶୁଆଇ ଦବନି । ପୁଅକୁ ଆଲ କରି କିଛିନା କିଛି ଗୋଟାଏ କହି ତାଙ୍କୁ ନିଦ ହେବା ଯାଏ ମୋତେ ଜାଗ୍ରତ ରଖନ୍ତି ।

ସେଦିନ ସେ ସେଇଁ ରହି ଏଣୁ ତେଣୁ ଗପ ନକରି ଗୋଟାଏ ଗପ ପଢ଼ିବା ଲାଗି କହିଲେ । ମୁଁ ଗପଟି ପଢ଼ିବାକୁ ବାଜି ନ ହେବାରୁ ସେ ପଢ଼ିଲେ ଓ ମୁଁ ଚୁପ୍ ଚାପ୍ ଶୁଣିଲି । ପରିଚିତ ଲେଖକର ଲେଖା, ମୋ ସ୍ତ୍ରୀଙ୍କର ପ୍ରିୟ ଲେଖକ ସେ । ତାଙ୍କ ଗପର ସେ ଅନେକ ସମୟରେ ତାରିଫ୍ କରନ୍ତି ।

"ମାଲତୀ ଅପା ସମସ୍ତଙ୍କ ଆଗରେ ମାଳା ବୋଲି ପରିଚିତା । ମାଲତୀ କହିଲେ ସେ ଅଞ୍ଚଳର ପ୍ରତ୍ୟେକ ଗାଁରେ ବୁଝିବେ । କେବଳ ମଫସଲ ନୁହେଁ ଛୋଟିଆ ସହରଟିରେ ମାଲତୀ ସମସ୍ତଙ୍କୁ

ଜଣା । ଦ୍ୱିତୀୟ ମହାସମର ସମୟ । ମାଳତୀଙ୍କ ବାପା ଯୁଦ୍ଧରୁ ଫେରି ସହରରେ ଥାଆନ୍ତି । ଯୁଦ୍ଧରେ ଥାଇ ସେ କେତେ ବିଦେଶୀଲୋକଙ୍କ ସଙ୍ଗେ ମିଶିଲେ । ସେହିମାନଙ୍କ ସଙ୍ଗେ ମିଶି ସେ ନାରୀଶିକ୍ଷାର ଗୌରବଟା କଣ ବେଶ୍ ଅନୁଭବ କରିଥିଲେ । ସ୍ତ୍ରୀଙ୍କର ପାଠପଢ଼ିବାର ବୟସ ଗଳି ଯାଇଥିଲା । ତେଣୁ ସେ ନିଜର କନ୍ୟା ମାଳତୀକୁ ଶିକ୍ଷା ଦେବା ଲାଗି ସ୍ଥିର କରିଥିଲେ ।

ମାଳତୀ ଯେଉଁ ଦିନ ସ୍କୁଲ ଗଲେ ସେଦିନ ଗୋଟିଏ ସହର-ଟିରେ ଗୋଟାଏ ଚହଳ ପଡ଼ିଗଲା । ଗଡନାୟକଙ୍କ କନ୍ୟା ସ୍କୁଲ ଯାଉଛି ବୋଲି ସବୁଠି ଆଲୋଚନା ଚାଲିଲା । ସ୍କୁଲରେ ମଧ୍ୟ ମେଳା ମେଳା ହୋଇ ଛାତ୍ରମାନେ ଆସି ମାଳତୀକୁ ଦେଖିନେଲେ । ସତେ ଯେମିତ ସେ ଗୋଟିଏ ବଣର ପଶୁ । ସର୍କସରେ ଖେଳ କରିବା ଲାଗି ଧରା ହୋଇ ଆସିଛି । ଆଜିକାଲି ପରି ସେ ଏନ୍. ସି. ସି. ରେ ପଶି କଲେଜରେ ଡ୍ରାମା କରି କମ୍ପା ରେଞ୍ଜର୍ ଅଫିସ୍ରେ ଭାବେ ନାମ କରି ନ ଥିଲେ । ସେ ଯେ ଗୋଟାଏ ଝିଅ ହାଣ୍ଡି ଚୁଲୀ ଛାଡ଼ି ସ୍କୁଲରେ ପଢ଼ିବା ଲାଗି ଆସିଛି; ସାଧାରଣ ନାରୀ ଜୀବନଠାରୁ ବ୍ୟତିକ୍ରମ କରିଛି ତାହାହିଁ ତାଙ୍କୁ ସମସ୍ତଙ୍କ ନିକଟରେ ଜଣାଇ ଦେଇଥିଲା ।

ଦୁହଁ ଦୁହଁ ବର୍ଷ ଚଳିଗଲା ବାଲି ଉପରେ ପାଣିପରି କୁଆଡେ ଉଭେଇଗଲା । ମାଳତୀଙ୍କ ମା ତାକୁ ଆଉ ସ୍କୁଲ ପଠାଇବା ଲାଗି ରାଜି ହେଲେ ନାହିଁ, ସେ କହିଲେ "ସବୁ କଥାର ଗୋଟାଏ ସୀମା ଅଛି । ସେ ସୀମା ଡେଇଁବାଟା ଅସୁନ୍ଦର । ଝିଅଟା ଘରଯୋଗ୍ୟା ହେଲା, ବାହା ହେବ, ପାଠ ପଢ଼ା ପୁଣି କଣ ? କଣ କେଉଁ ଭେଣ୍ଡିଟି କାଲଟର ହେବ ?" ଶେଷରେ ଠିକ୍ ସେଇଆ ହେଲା । ମାଳତୀର ପାଠପଢ଼ା

ବାଦ ହେଲା । ତା ଲାଗି ବଡ଼ ଘର ଖୋଜା ହେଲା । କେଉଁଠି ଘର ଭଲତ, ବର ଗୁଣର ନୁହେଁ; କେଉଁଠି ବର ଗୁଣରତ ଘର ମନକୁ ଆସିଲା ନାହିଁ ।

ଏମିତ ବାଛବଚ୍ଛର ପରେ ଶେଷରେ 'ସୁରଭି' ଗାଁର ଦଳେଇ ଘର ଆସିଲେ ପ୍ରସ୍ତାବ ପକାଇବାକୁ ଦଳେଇଙ୍କ ବଡ଼ ମଝିଆଁ ପୁଅଙ୍କ ସଙ୍ଗରେ । ଦଳେଇ ଘର ସେ ଅଞ୍ଚଳର ଖାନ୍‌ଦାନ୍ ଘର ରୂପେ ଜଣା । ଜମି ଜମା ଥିଲା । ଟଙ୍କା ଦେଣା ନେଣା ଚାଲୁଥିଲା ହେଲେ ଅଜ ସେ ଆଭିଜାତ୍ୟ ଆଉ ନାହିଁ ।କର୍ପୂର ଗଲଣି ଖାଲି ପଡ଼ ରହିଚ କନା । ଗଡ଼ନାୟକ ମନାକରୁଥିଲେ ମଧ୍ୟ ତାଙ୍କ ସ୍ତ୍ରୀ ଜିଦ୍‌ଧରି ବସିଲେ 'ନାଇଁ ମୁଁ ମୋ ମାଲାକୁ ଏଇଠି ଦେବି' । ଆଉ ଯାହା ଥାଉ ନ ଥାଉ ଜମି ଜମାତ ଅଛି । ପାଠ ନଥିଲେ କଣ ହେଲା । ସେ ତ ଭାତମୁଠାକ ବିନା କେବେ ଉପବାସରେ ରହିବ ନାହିଁ । ସେତିକ ମୋର ଯଥେଷ୍ଟ । ତେଣିକ ତା ଭାଗ୍ୟ ସେ ଭୁଞ୍ଜିବ । କାହା କରମଲେଖନ କେହି ବଦଳାଇ ପାରିବ ନାହିଁ । "ଗଡ଼ନାୟକ ଯୁକ୍ତି କଲେ" ପାଠ ଶାଠ ନାହିଁ, ଏ ଜମିଜମା କଣ ରହିବ ? ମୁଁ ଭାବୁଥିଲି ପାଠୁଆ ଶାଠୁଆ କ୍ୱାଇଁଟିଏ ହୋଇଥିଲେ ଆମ ମାଲା ଯେମିତ ପାଠ ପଢ଼ିଛି…,'ଥାଉ ଥାଉ ସେଗୁଡ଼ା ଆଉ କହନା…" ଗଡ଼ନାୟକ ଚୁପ୍ ହେଲେ…ବାହାଘର ସବୁ ସ୍ଥିର ହୋଇଗଲା । ହେଲା ପାଟମୁଦି…ଦୁଇ ଗାଁ ମଝାମଝି ପ୍ରୀତିପୁର ବାସେଲିଙ୍କ ମନ୍ଦିରରେ ।"

ସେହି ଅବସରରେ ଦଳେଇ ଗଡ଼ନାୟକଙ୍କ ଘରକୁ ଆସିଥିଲେ ବୋହୂ ଦେଖି । ସାଢ଼େ ପାଞ୍ଚ ହାତର ମଣିଷ, ଗୋରା ଦେହ, ଉନ୍ନତ କପାଳ, ଢଳକୁ ଅନାଇ ଦେହ, ମୁହିଁ ହସ

ହସ । ଘୋଡ଼ା ଛୁଟାଇ ଆସି ସେ ଗଡ଼ନାୟକଙ୍କ ଦ୍ୱାରରେ ପହଞ୍ଚିଲେ । ଗାଁ ଦାଣ୍ଡରେ ଘୋଡ଼ା ଧୂଳି ଉଡ଼ାଇ ଗଲାବେଳେ ଲୋକେ ସବୁ ପିଣ୍ଡାରୁ ଓହ୍ଲାଇ ସମ୍ମାନ ଦେଖାଇଲେ । ଗାଁ ସ୍ତ୍ରୀମାନେ ଝରକା ମଧ୍ୟ ଦେଇ ପଦାକୁ ଚାହିଁଲେ, କହିଲେ, "ମାଲତୀ ଜେମାଙ୍କ ବିଭା-ଘର ହେବ··· । ଶ୍ୱଶୁର ତାଙ୍କର ଦେଖି ଆସିଛନ୍ତି ।"

ଅତିଥିଙ୍କୁ ଚାହିଁ ଆୟୋଜନ··· । ଗାଁ ବାରିକ ସମ ପିକଦାନ ଧରି ଛାୟା ସଙ୍ଗେ ଛାୟା ପରି ଦଳେଇଙ୍କ ପାଖେ ପାଖେ ରହିଥାଏ । ଶେଷରେ ବୋହୂ ଦେଖା ହେଲା ।

ବାଡ ଘରେ ଗୋଟାଏ ପରଦା ଟଣାଗଲା । ଗୋଟଏ ପଟେ ବସିଲେ ସମୁଦ୍ଧ ଦଳେଇ, ଅନ୍ୟ ପାଖରେ ବସିଲା ମାଲତୀ । ଭଣ୍ଡା-ରୁଣୀ ଆସି ସ୍ତ୍ରୀଙ୍କୁ କହିଲା, "ଦଳେଇ ସାଆନ୍ତଙ୍କୁ କହିଦେ ଜେମା ମୁଣ୍ଡିଆ ମାରୁଛନ୍ତି ।" ଦଳେଇ ନିଶ ସାଉଁଳି ସାଉଁଳି କହିଲେ, "ହଉ ହଉ···ମା' ମୋର ଦୀର୍ଘଜୀବୀ ହେଉ । ହାତ କାଚ ତାର ବଜର ହେଉ ।"

ତାପରେ ମାଲତୀ ହାରମନିୟମରେ ଲହର ଦେଇ ଗୀତଟିଏ ଗାଇଲେ । ଦଳେଇ ଗୀତ ଶୁଣି ବାସ୍ତବରେ ଆନନ୍ଦିତ ହେଲେ । ବୋହୂ ତାଙ୍କର ଶିକ୍ଷିତା । ଗୀତ ଗାଇ ଜାଣେ ଏମିତି ବୋହୂ କେତେଜଣଙ୍କ ଭାଗ୍ୟରେ ଯୁଟେ ! ସତରେ ସେ ଭାଗ୍ୟବାନ । ଗୀତ ବୋଲା ସରିଗଲା । ମାଲତୀ ବାପାଙ୍କ ନିର୍ଦ୍ଦେଶମତେ ଆସି ଦଳେଇଙ୍କ ପାଦତଳେ ନମସ୍କାର କଲା । ବୋହୂ ଦେଖା ସ୍ୱରୂପ ଦଳେଇ ଗୋଟା ଗୋଟାକରି ଦଶଟା ଟଙ୍କା ଠନ ଠନ କରି ପିତଳ ଥାଳି ଉପରେ ପକାଇ ଦେଲେ । ପରଦାର ଅନ୍ତରାଳରୁ ଯେଉଁ-ମାନେ ଚାହିଁ ରହିଥିଲେ ସେମାନଙ୍କ ଆଖି ଖୋସି ହୋଇଗଲା ।

ଗୋଟାଏ ନୁହେଁ, ଯୋଡ଼ାଏ ନୁହେଁ ଦଶଟା ଗୋଟିକିଆ ଟଙ୍କା। ଏକକାଳୀନ ଏତେ ଟଙ୍କା ଏ ଅଞ୍ଚଳର ଖୁବ୍ କମ୍ ଲୋକ ଦେଖିଥିବେ ।

ବିବାହ ଲାଗି ତଥି ଠିକ ହୋଇଗଲା । ଦଳେଇ ସାଆନ୍ତ ଯେମିତ ଘୋଡ଼ା ଛୁଟାଇ ଆସିଥିଲେ ସେମିତ ଫେରିଗଲେ ।

ଧନ କେଇଟା ମଧ୍ୟରେ ମାଳତୀ ଜୀବନରେ ଆସିଲା ବିରାଟ ପରିବର୍ତ୍ତନ । ସେ ଜାଣି ନଥିଲା ଯେଉଁ ଘର ଗୃହକରବାକରଙ୍କ ଗୃହଚଳନରେ ଦାନଗତ ପଡ଼ୁଥିଲା ଉଠୁଥିଲା ସେ ଘର ରଙ୍ଗ ଅଭାବରେ, ମରାମତ ଅଭାବରେ ମାଟିରେ ମିଶିବ । ଯେଉଁ ଆହାରକୁ ଅଖାଦ୍ୟ କହି ଗୋଡ଼ରେ ଆଡ଼େଇ ଦେଉଥିଲା ତାହା ତା ପାଇଁ ହେବ ସାତ ସପନ । ଯେଉଁ ସନ୍ତରା ମସିଣା ଶୋଇବାକୁ ଦେଲେ କାଟିବ ବୋଲି କୁକୁର ଲାଗି ଢ଼ଳାହେଯ ନଂଟନ୍ତ୍ରେ ଯିଦ ଧରି ସେ ମାଙ୍କ ନିକଟରେ ବସୁଥିଲା ହେଇ ସନ୍ତରାବ ତାର ଭାଗ୍ୟରେ ଯୁଟିବ ନାହିଁ ।

ଦଳେଇଙ୍କ ମୃତ୍ୟୁପରେ ସ୍ୱାମୀ ରଜମୀକାନ୍ତ ଯାହା ଲୁଚାଇ ଲୁଚାଇ କରୁଥିଲେ ତାହା ଖୋଲା ଖୋଲି ଭାବେ କଲେ । ମଦ ଖାଇ ପର ସ୍ତ୍ରୀ ହରଣରେ ସବୁ ଉଡ଼ାଇଲେ । ରଏତମାନେ ଏହାର ସୁଯୋଗ ନେଲେ । ସେମାନେ ଭାଗଧାନ ଫେରାଇଲେ ନାହିଁ । ଖାତକମାନେ ଦେଣା ପରିଶୋଧ କଲେ ନାହିଁ । ଯାହା ଧନ ସମ୍ପତ୍ତି ଥିଲା ଆଉ କେତେଦିନ ଯାଆନ୍ତା । ବସି ଖାଇଲେ ନଈବାଲି ସରେ ।

ମାଳତୀ ଯେଉଁଦିନ ସ୍ୱାମୀଙ୍କ ସମ୍ମୁଖରେ ଏସବୁର ଖୋଲା ଖୋଲି ପ୍ରତିବାଦ କଲା ସ୍ୱାମୀଙ୍କ ଅହମିକା ଉପରେ ଆଘାତ ଲାଗିଲା । ସେ କପରି ବରଦାସ୍ତ କରିବେ । ସାମାନ୍ୟ ଚାଷୀଲା

ଲୋକଟେ ତାଙ୍କୁ ତାଗିଦ କରିବ । ଯେତେ ସ୍ତ୍ରୀ ହେଲେ କଣ ହେଲା ? ମାଳତୀ ସେଦିନ ପ୍ରତିବାଦ କରି ପୁରସ୍କାର ପାଇଲା ଦୁଇଟି ଭୂଷି ତା ଗାଲ ଉପରେ । କ୍ଷୀଣତନୁ ମାଳତୀ ମୃତପ୍ରାୟ କଷ୍ଟ ଅନୁଭବ କଲା । ସେ କିନ୍ତୁ ନୀରବ । କହିବ କାହାକୁ ? ସ୍ୱାମୀ ତାର ମଦ୍ୟପ...କଣ କରୁଛନ୍ତି ଜାଣନ୍ତି ନାହିଁ । ତୁଣ୍ଡ ବାଇଦ... ତାକୁ ଅଟକାଇବ କିଏ ? ପ୍ରୀତିପୁରରେ ସମ୍ବାଦ ପହଞ୍ଚିଲା...ବାପା ଆସିଲେ ଅଲଅଳ ଝିଅ ମାଳତୀକୁ ଦେଖି ।

ମାଳତୀ ଗୋଡ଼ରେ ଓଦାକନାର ପଟି । ବାପା ପଚାରିଲେ କାଲେ ଝିଅ ଗୋଡ଼ କଣ ହେଲା ? କିଛି ନାହିଁ ଝୁଣ୍ଟି ପଡ଼ିଲି । ଆଗରେ ପଥରଖଣ୍ଡା ଥିଲା ଗୋଡ଼ରେ ବାଜି ଟିକେ କଟି ଯାଇଛି । ପାଣି ପଟି ଦେଉଛି । ଘା' ଶୁଖି ଗଲାଣି, ଆଉ ଦିନେ ଦିଦିନ ମଧ୍ୟରେ ଭଲ ହୋଇଯିବ ।

ଗଡ଼ନାୟକ ଠିକ୍ ବୁଝିଲେ ଜ୍ୱାଇଁ ରଜନୀକାନ୍ତ ଝୁଅର ପିଟିବା ସତ କଥା । ହେଲେ ମାଳା କଣ କହିବ ? ନା ! ସେ ସେପରି ଝିଅ ନୁହେଁ । ତା ଠାରୁ କଥା ନେବା ଅତି କଠିନ । ବାପା ମୁଣ୍ଡରେ ହାତ ଦେଇ ବସିଗଲେ ।

"ସବୁ ଭାଗ୍ୟ, ମଣିଷ ପିତା ଜନ୍ମ ଦିଏ କିନ୍ତୁ ଭାଗ୍ୟ ଦେଇ ନଥାଏ, ଯାହା ତା ଭାଗ୍ୟରେ ଥାଏ ତାହା ସେ ଭୋଗେ, ଶତ ଚେଷ୍ଟା କଲେ ବି ଯାହା ଭୋଗିବାର ଥିବ ତାହାକୁ ବଦଳାଇ ପାରେ ନାହିଁ ।"

ଝିଅଠୁ ବିଦାୟ ନେଇ ଗଡ଼ନାୟକ ଫେରିଲେ । ଏପର୍ଯ୍ୟନ୍ତ ସେ ମୁଣ୍ଡ ନୁଆଇଁ କେଉଁଠି ଠିଆ ହୋଇ ନଥିଲେ । ଏଇ ଠିଆ ହେଲେ ପ୍ରଥମ । କୌଣସି ଶତ୍ରୁ ଠାରୁ ପରାଜୟ ମାନି ନାହାନ୍ତି ।

ହେଲେ ଗ୍ଲଏଁ ଗ୍ଲଏଁ ଶିର ତାଙ୍କର ଅବନତ ହୋଇ ଯାଇଛି । ମାଳାର ଆଜି ଦୁର୍ଦ୍ଦଶା ପାଇଁ ସିଏ ଦାୟୀ ନୁହନ୍ତି ଆଉ କିଏ ?

ଝିଅ ଘରେ ଦୁଇଦିନ ରହି ବାପା ବିଦାୟ ନେଲେ ।

ବିଦାୟ ବେଳାରେ ଆଖି ଛଳଛଳ, କଣ୍ଠ ବାଷ୍ପାକୁଳ, ବାପା ପଚାରିଲେ ମାଳା ବୋଉକୁ ଆଉ କଣ କହିବ ? ଲୁହ ପୋଛୁ ପୋଛୁ ଝିଅ କହିଲା କହି ଆସିଥିଲି ବୋଉ ବୋଧେ ଭୁଲି ଯାଇଛି, ମନେ ପକାଇ ଦେବେ ମୋ ପାଇଁ ଦୁଇଟା ପାଛୁଆ ପଠାଇ ଦେବ ।

ଦିନ ଯାଏ କଥା ରହେ । ଦିନ ଗଡ଼ିଚାଲିବା ସଙ୍ଗେ ସଙ୍ଗେ ନୂଆ ନୂଆ ଘଟଣା ଘଟି ଯାଉଥିଲେ ମଧ୍ୟ ଲୋକେ ସେଥିରେ ଆଉ ଗୁରୁତ୍ୱ ଦେଲେ ନାହିଁ । ପୁରୁଣା ରୋଗୀ, ନିତିଦିନିଆ ଘଟଣା ଉପରେ କେତେ ଜଣ ବା ଗୁରୁତ୍ୱ ଦିଅନ୍ତି ? ତଥାପି କଥା ଛପି ରହେନି । ଦିନକୁ ଜାତିଏ ଲେଖାଏଁ କଥା ଶୁଣାଯାଏ । ରଜନୀକାନ୍ତ ଆଜି ନିଜ ସ୍ତ୍ରୀଠୁ ଅଳଙ୍କାର ନେଇ ବିକିବାକୁ ଚାହିଁବାରୁ ପ୍ରତିବାଦ କରି ମାଡ଼ ଖାଇଲାଣି ତ, ଭାତ ହେବାକୁ ଡେରି ହେଲା, ଜାଳେଣି ନଥିବାରୁ, ତାର କାରଣ ନବୁଝି ମାଡ଼ ଦେଇଛନ୍ତି ମଦ୍ୟପ ସ୍ୱାମୀ । କେଉଁଦିନ ସ୍ତ୍ରୀକୁ ମାଡ଼ମାରି ପୁଅଣି ଦଳୁ ବାପା ଫେରିଲା ବେଳେ ଝିଅକୁ ଦେଇଥିବା କାଶ୍ମୀର ଶାଲଟିକୁ ନେଇ ବିକି ଗୁଲି ଖାଇଛି । କେଉଁଦିନ ମାଡ଼ଖାଇ ଯିଠ ସ୍ଥାନରେ କଳାପୋଡ଼ି ଦେଇଛନ୍ତି କେଉଁ ଦିନ ଓଦାକନା ଭିଡ଼ିଛି । ସେ କିନ୍ତୁ କେବେ ପାଟି କରି ପଦେ ସ୍ୱାମୀକୁ ଗାଳି ଦିଏନି । ଲୋକେ ଦୁଃଖ କରନ୍ତି । କହନ୍ତି, ଚଣ୍ଡାଳଟା, ମିଚ

କହାଲି - 'ହଁ ଅଛି ନଚେତ ଏ କୁଳାଙ୍ଗାର ହାତଧରି ନଥାନ୍ତା' । ଦୁନିଆରେ ଯେତେ ଅବିବେକ ଅଛନ୍ତି ତାଙ୍କର କଣ ଶାସ୍ତି ନାହିଁ ? ଧନ୍ୟରେ ଭଗବାନ !

ସେଦିନ ବେଳ ରତି ରତି । ମାଳା ଚିକ୍କିକ ଅଜଜା ଭଙ୍ଗା କୋଠାଟିକୁ ଚାହିଁ ରହିଥାଏ । ହଠାତ୍ କାହିଁକି ତାର ପିଲାଦିନର କଥା ମନେ ପଡ଼ିଲା । ସତେ ଯେମିତି ଅୟୁା ଆସି ତାକୁ କାଲଖିଆ ଖାଇବାକୁ ଡାକୁଛି ।

ହଠାତ୍ ରମା ଆସି ପଛରୁ ନମସ୍କାର କଲା, ମାଳା ଚମକି ଚାହିଁଲା ରମାକୁ । ପଡ଼ୋଶୀ ଘର ନାୟକଙ୍କ ପୁଅ । ନେଖା ଯୋଖାରେ ପୁତୁରା, ରମାର ଡାକ ନା ବେଙ୍ଗ । ବ୍ଲକ ଅଫିସର ହୋଇ ଏ ଅଞ୍ଚଳକୁ ଆସିଛି । ମାଳା ପଚାରିଲା—କରେ ବେଙ୍ଗ ତୁ କେମିତି ଆସିଲୁ ? ଗରିବ ଅପାଟା ମାହି ହେଉ ମନରେ ଅଛୁ । କେହିତ ମୋ ପାଖକୁ ଆସନ୍ତି ନାହିଁ । ତୁ ଆସିଲୁ କାହିଁକି ?

"କାହିଁକି ?"

ଛାଡ଼ ଛାଡ଼, କଣ ଛୋଟେ କହୁଥିଲୁ, ତୁ ହେଲୁ ଧର୍ମା ନେଳକଙ୍କ ରୋଜଗାରିଆ ପୁଅ । ଅଉ ମୁଁ......କରେ ବେଙ୍ଗ ନୂଆବୋଉ କେମିତି ଅଛନ୍ତି ? ଅଉ ଗାଁ ଖବର କଣ, ? ଏଇ "ନୂଆବୋଉ" ବେଙ୍ଗ ମା ବୁଢ଼ୀ ହେଲେ ବି ମାଳାର ଅଜା ନୂଆବୋଉ । ପିଲାଦିନୁ ସେ ତାଙ୍କୁ ନୂଆ'ଉ ବୋଲି ଡାକି ଆସିଛି ।

ରମା ମାଳତୀ ମୁହଁକୁ ଚାହିଁଲା । ନିଜକୁ ବିଶ୍ୱାସ କରି ପାରିଲା ନାହିଁ । ସେ ଦେଖୁଛି ମାଳତୀ ଅପା ତାର ଚିହ୍ନିଛି କଣ ? କି ମଇଳା ଏ ଲୁଗା, ସତେ କଣ ତାର ଖଣ୍ଡିଏ ଆଉ ଦଖଣ୍ଡ ନାହିଁ ।

ଏଇ ଖଣ୍ଡିକ ଧୋଇ ଶୁଖେଇ ପିନ୍ଧୁଛି ! ତେବେ ଯେତେ ଯାହା ଶୁଣୁଥିଲା ସବୁ ସତ । ଖାଇବା ପୂର୍ବରୁ ଏଇ ଅପା ତାର ଡନଟରେ ସାବୁନରେ ହାତ ଧୋଉଥିଲା । ଲୁଗାରେ ବଡ଼ ଭଉଣୀର ସାନ ପୁଅ ମୂତ ଦେଉଥିଲେ ଡେଟଲ୍‌ରେ ନ ଧୁଆଇବା ପର୍ଯ୍ୟନ୍ତ ସେ ମା'କୁ ଛୁଉଁ ନଥିଲା । ଏଇ କଣ ସେହି ଅଲଅଳ ଆଦରର ସାନଝିଅ ମାଳ !

ରମା ଅଧଦନରେ ଆସିଛି, ବଡ଼ ଲୋକର ପୁଅ, ସିଏ ଯେ ଆସିଛି ସେହି ଯଥେଷ୍ଟ । କଣ ଏମିତ ଖାଲି ଖାଲି ଫେରିଯିବ । କଣ ବା ଦେବ ତାକୁ ଖାଇବାକୁ । ଚା, ଚିକେ ଦଅନ୍ତା···ଚିନି ନାହିଁ, ଚିନି ମଗାଇବାକୁ ପଇସାବି ନାହିଁ ।

ମାଳତୀ ପଚାରିଲା ଆରେ ରମା ଟିକେ ଜଳଖିଆ କରୁଛୁ ଖାଇବୁ ବସ, ଯିବୁତ ଏମିତ ତରତର ହେଉଛୁ କାହିଁକି ? ନଥେଲା ଅପାଟାମ୍. ଦେଖେ କଣ ଅଛି ।

"ନାହିଁ ମୁଁ ଖାଇବ ନାହିଁ, ମୁ ଜାଣେ ଆସିଲେ ତୋର ଏ ସବୁ ବାହାରିବ ।" ମାଳା ସିନା କହିଦେଲା ଏବେ ଖାଇବାକୁ ଦେବ କଣ ? ମୁଣ୍ଡ ତାର ଘୁରିଗଲା ।

ରୋଷେଇ ଘରୁ ମାଳା ଡାକିଲା ରମା ବସ୍ ବସ୍ ଅଣ୍ଡାଟାଏ କରି ନେଉଛି । ଟିଆ ଟିଆ ଖାଇ ଦେଇ ଯିବୁ, ଡେରି ହେବନି, ଆଉ କିଛି କରୁନାହିଁ । କଣ ହେଲା କେଜାଣି ହଠାତ୍ ଆଖିରୁ ତାର ଲୁହ ଝରି ଉଠିଲା । ଅଣ୍ଡାଟିଏ ଭଙ୍ଗି ଖାଇବାକୁ ଦେବାକୁ ସେ ଆଜି କେତେ ଭାବୁଛି । ଘରେ ଦରକାର ନାହିଁ, ମଦ୍ୟପ ସ୍ୱାମୀ ଖୋଜିବ ଅଣ୍ଡା । କୁକୁଡ଼ା ଅଣ୍ଡା ଦେଇନାହିଁ—ଏ ଉତ୍ତର ଯଥେଷ୍ଟ ନୁହେଁ । ସେଥିପାଇଁ ତାକୁ ଶାସ୍ତି ଭୋଗିବାକୁ ପଡ଼ିବ ।

ରମା ପଚ୍ଚରିଲା ଅପା କାନ୍ଦୁଚୁ କାହିଁକି ? "ଆରେ କାନ୍ଦିବି କାହିଁକି···କିଛି ହେଇନି, ଏଇ ଧୂଆଁ ଯୋଗୁ ଲୁହ ବୋହୁଚି । କାଠ ସବୁ ଯାଇଚି, ଘଷିଗୁଡ଼ା ଶୁଖି ନାହିଁ । ରମା ସବୁ ବୁଝିଲା··· ହୃଦୟରେ ଆଘାତ ଲାଗିଚି କେଉଁଠି ।

ନମସ୍କାର ହେଉ ହେଉ, ବେଳ ହେଲେ ପୁଣି ଆସିବ କହି ରମା ଚାଲିଗଲା ।

ସେତିକି ଥାଉ । ଆଉ ପଢ଼ନା । ସଙ୍ଗିଣୀ ପଚାରିଲା କଣ ହେଲାକି ? ଗପଟା ତ ଏଇ ଶେଷ ହେଲା । ପଢ଼ିବାକୁ ମନା କଲ କାହିଁକି । "ନା ସେମିତି କିଛି କାରଣ ନାହିଁ ।"

ନିଶ୍ଚୟ କିଛି ଅଛି ନହେଲେ ତୁମେ···କହିବନି···ନକୁହ ମୁଁ ଠିକ୍ ଜାଣେ ତୁମେ ମୋତେ ବିଶ୍ବାସ କରନା ।

"ଆରେ କିଛି ନାହିଁ କହିଲି । ଏଠି ବିଶ୍ବାସ ଅବିଶ୍ବାସର ପ୍ରଶ୍ନ ଉଠୁଚି କେଉଁଠି ?"

ସ୍ତ୍ରୀ ମୋର ଜିଦ୍ ଧରି ବସିଲେ ଜାଣିବାକୁ ଗପ ପଢ଼ି ମଝାମଝି ନଦେଲି କାହିଁକି ? ଗପ ପଢ଼ିବାକୁ ମନା କଲି କାହିଁକି ? ମୁଁ କହିବି କି ନାହିଁ କିଛି ସ୍ଥିର କରି ପାରିଲି ନାହିଁ । ମାଲତୀ ଯେ ମୋର ମଉସାଙ୍କ ଝିଅ ଭଉଣୀ ଓ ମଉସାଙ୍କ ଭୁଲରୁ ଆଜି ଏଇ ଦୁର୍ଦ୍ଦଶା···ଏ ସମାଧାନ ଶୁଣିଲେ ସଙ୍ଗିଣୀ ଭାବିବ କଣ ? ମୁଁ କିଛି ଠିକ୍ କରିପାରିଲି ନାହିଁ । କେଇଟି ମିନଟ୍ ପୂର୍ବରୁ ଯେଉଁ ମୁହଁରେ ଦୁଷ୍ଟାମିର ହସ ଫୁଟି ଉଠୁଥିଲା ସେଠି ଅଭିମାନର ଛାଇ ଲିପି ହୋଇଗଲା । ସଙ୍ଗିଣୀ ମୋଠୁ ଜାଣିବାକୁ ଚାହିଁଲା ଶେଷଥର ଲାଗି—ମୁଁ କହିବି କି ନାହିଁ ଗପ ପଢ଼ିବାକୁ ମନା କରିବାର କାରଣ କଣ ?

"ହିଁ ନିଶ୍ଚୟ କହିବି । ମୋ କଥା ମାନ···ଆଗ ଟିକେ ଶୋଇପଡ଼···ସକାଳ ହେଉ ।"

ଏ ମଧ୍ୟରେ ଛୋଟ ପୁଅଟି ମୋର କେତେବେଳୁ ଉଠି ପଡ଼ିଲାଣି, ଆମକୁ ଜଣା ନାହିଁ । ରାଗିଣୀ କଣ କହି ଆସୁଥିଲେ ତାଙ୍କୁ ଲୁହାଇ ନଦେଇ ପୁଅ ମୋର କହିଲା···ବୋଉ ତୁ ପରା କହୁଥିଲୁ ବାପାଙ୍କ କଥା ସମସ୍ତେ ମାନିବାକୁ···ତୁ ମାନୁନାହୁଁ କାହିଁକି ? ମୁଁ କେମିତି ବାପାଙ୍କ କଥା ମାନି ଆଜିକାଲି ସବୁଦିନ ସକାଳେ ଖବରକାଗଜ ପଢୁଛି । ନୁହେଁ ?

ମୁଁ କିଛି ନ କହି ତାକୁ ଚାହିଁ ରହିଥିଲି, ଅଭିମାନରେ ରାଗିଣୀ ଫୁଲି ଫୁଲି ଉଠୁଥିଲା ।

---

* "ଶବ୍ଦପୁରୀ"
ଅପ୍ରେଲ ୭୨



# ନକ୍ଷତ୍ରନୀଡ଼ର ସଂଗୀତ

ବିଳମ୍ବରେ ହେଉ ଅବା ଶୀଘ୍ର ହେଉ ସମସ୍ତଙ୍କ ଜୀବନରେ ଆସେ ମଧୁରାତ୍ରି । ସେହି ରାତ୍ରି ସେଦିନ ଆସିଥିଲା ମୋ ଜୀବନରେ । ଏହାର ପ୍ରତୀକ୍ଷାରେ ମୁଁ ଅବଶ୍ୟ କେବେ ନ ଥିଲି ।

ନୀଷ୍ଠା ଶୋଇ ପଡ଼ିଥିଲା । ମୁହଁ ଉପରେ ତାର ମାସିଳ ଟସି କାଟି ପଡ଼ୁଛି । ମଶା କେଇଟା ଉଡ଼ୁଛନ୍ତି । ତନୁ କ୍ଲାନ୍ତଶ୍ରାନ୍ତ । ଦୀର୍ଘ ରାସ୍ତା ଆସିଲା ପରେ ସେ କ୍ଲାନ୍ତ ହୋଇ ପଡ଼ିବା ସ୍ୱାଭାବିକ ।

ମୁଁ ଚୁପ ଚୁପ ଯାଇ ହଲାଇ ପଚାରିଲି, କଣ ଶୋଇ ପଡ଼ୁଛ । ନିହାତି କ୍ଲାନ୍ତ ଲାଗୁଛି ?

'ହଁ'—ଉଠୁ ଉଠୁ ଉତ୍ତର କଲା ନୀଷ୍ଠା । 'ଅରେ ଉଠୁଛ କାହିଁକି । ଶୋଇପଡ଼ । ଉଠିବାର ଆବଶ୍ୟକତା ନାହିଁ । ଶୋଇ ରହି କହିଲେ ବି ମୁଁ ଶୁଣି ପାରିବି । ମୋତେ ବି କ୍ଲାନ୍ତ ଲାଗୁଛି । ଏତେଦୂର ଆସିଲା ପରେ ଯେ କେହି···।

'ମୋ ପ୍ରତି ଏ କଟାକ୍ଷ କାହିଁକି ? ମୁଁ ଜାଣି ଜାଣି ଶୋଇ ପଡ଼ି ନ ଥିଲି । ମୋର ଅନିଚ୍ଛା ସତ୍ତ୍ୱେ ମୋତେ ନିଦ ହୋଇ ଯାଇଛି ।'

'ଏଥିପାଇଁ ମୁଁ ତୁମକୁ ଦୋଷୀ କରୁନାହିଁ । ମୁଁ ଏତେ ସ୍ୱାର୍ଥପର ନୁହେଁ । ଅନ୍ଧ ନୁହେଁ ।'

ଝୀଷ୍ଣା ମୋ ପାଖିରେ ହାତ ଦେଇ କହିଲା ଥାଉ ଥାଉ ଏଠି ବକ୍ତୃତା··· ।

"ଆମ ଘରେ ତୁମକୁ କପରି ଲାଗୁଛି । ତା ପରେ ପ୍ରଶ୍ନ କଲି ।"

'ଏ ଘରକୁ ମୁଁ ଅତିଥିରୂପେ ଆସି ନାହିଁ । ଆସିଛି ବୋହୂ ହୋଇ । ମୋତେ ଏଠି ସବୁଦିନ ପାଇଁ ରହିବାକୁ ହେବ । ଏ କଥା ମୁଁ ବେଶ୍ ଭଲରୂପେ ଜାଣେ । ମୋତେ ଏଠି କପରି ଲାଗୁଛି ନ ଲାଗୁଛି ଏପରି ଏକ ନିରର୍ଥକ ଆଲୋଚନା କରି ଲାଭ ବା କଣ ? ଧର ଯଦି ମୁଁ କହେ ମୋତେ ଏଠି ଭଲ ଲାଗୁ ନାହିଁ, ତେବେ କଣ କରିବ ।' 'ଗୋଟାଏ କିଛି ବ୍ୟବସ୍ଥା କରିବା··· ।' ବ୍ୟବସ୍ଥାଟା କ'ଣ ଟିକେ ଶୁଣେ··· ।

ଏପରି ଏକ ପ୍ରଶ୍ନର ଉତ୍ତର ଲାଗି ମୁଁ ପ୍ରସ୍ତୁତ ନ ଥିଲି । ମୋର ତେଜି ହେବାର ଦେଖି ଝୀଷ୍ଣା କହି ଉଠିଲା ତୁମ ଆମ ଭିତରେ ପାର୍ଥକ୍ୟଟା ହେଲା ଏଇଆ । ତୁମେ ସବୁ ଏକ ଅସ୍ୱାଭାବିକ ପରିସ୍ଥିତିର କଳ୍ପନା କରି ସେଥିରେ କପରି ନିଜକୁ ଚଳାଇବ ସେ ନେଇ ଚିନ୍ତା କର । ବ୍ୟସ୍ତ ହୁଅ । ଆମେ କିନ୍ତୁ ସ୍ୱପ୍ନ ଦେଖୁ ନାହିଁ । ବାସ୍ତବତାର ସମ୍ମୁଖୀନ ହେଉ । ନୂତନ

ପରିଚିତ, ନୂଆ ମଣିଷକୁ ଅପଣାର କରିବାରେ ଆମର ଗୌରବ । ଯୁଗେ ଯୁଗେ ମଣିଷ ସମାଜକୁ ଏ ହେଉଛି ନାରୀର ଅବଦାନ ।

ଆଜ ଅନ୍ତତଃ ମୋତେ ତୁମର ଗବେଷଣାର ଫର୍ଦ୍ଦ ନ ପଢ଼ାଇଲେ ଭଲ ହୁଅନ୍ତା, ସ୍ମିତ ହସି ମୁଁ କହିଲି । ଏ ସବୁ କଥା ମୋର ସ୍ପଷ୍ଟ ମନେ ଅଛି । ଏହାପରେ ଏକ ମଧୁର ସ୍ମୃତି ମନରୁ ମଉଳ ଯିବା ପୂର୍ବରୁ କ୍ରୀଷ୍ଣା ମୋ ନିକଟରୁ ସବୁଦିନ ପାଇଁ ବିଦାୟ ନେଇ ଚାଲିଯିବ, ଏ କଥା ମୁଁ କେବେ ସ୍ୱପ୍ନରେ ସୁଦ୍ଧା ଆଶଙ୍କା କରି ନ ଥିଲି ।

କ୍ରୀଷ୍ଣାର ମୃତ୍ୟୁରେ ସମବେଦନା ଜଣାଇ ମୋତେ ଯେତେଗୁଡ଼ିଏ ଚିଠି ମିଳିଥିଲା ସେଥିମଧ୍ୟରୁ କ୍ରୀଷ୍ଣାର ଚିଠିଟି ସବୁଠାରୁ ଶ୍ରେଷ୍ଠ । ସେଥିରେ ସେ ଲେଖିଥିଲା, '× × ପ୍ରିୟଜନର ମୃତ୍ୟୁ ପ୍ରାଣରେ କି ଆଘାତ ଦିଏ ସେ କଥା ଅନ୍ୟ କେହି ନ ବୁଝିଲେ ମଧ୍ୟ ମୁଁ ଅନ୍ତତଃ ବୁଝେଁ । କ୍ରୀଷ୍ଣା ମୃତ୍ୟୁ ମୋତେ ମୃତ-ପ୍ରାୟ କଷ୍ଟ ଦେଉଛି । କ'ଣ ଲେଖି ତୁମକୁ ସାନ୍ତ୍ୱନା ଦେବି, ଭାବି ପାରୁନାହିଁ । ତୁମ ବିନା ତୁମକୁ କେହି ସାନ୍ତ୍ୱନା ଦେଇ ପାରିବେ ନାହିଁ । ବିପଦରେ କେବେ ଭାଙ୍ଗି ପଡ଼ିବା ଉଚିତ ନୁହେଁ । ଏ କଥା ତୁମେ ବରାବର ମୋତେ କହି ଆସିଛ । ଏହାଠାରୁ ଅଧିକ କୌଣସି ମୂଲ୍ୟବାନ କଥା ମୁଁ ତୁମକୁ ଆଜି ଏ ଦୁର୍ଦ୍ଦିନରେ କହିବାକୁ ସାହସ କରି ପାରୁନାହିଁ । ଇତି ।

'କୃଷ୍ଣା'

କୃଷ୍ଣା ମୋର ସହପାଠିନୀ; ସାଙ୍ଗହୋଇ ପଢୁଥିଲୁ । ସେ ଦୁଇ ବର୍ଷ ହେଲା ନିଜର ସ୍ୱାମୀକୁ ହରାଇଛି । ଯେଉଁଦିନ

ଶୁଣିଲି ଭୁଷ୍ଟାର ସ୍ଵାମୀ ଆଜ ଜୀବନରେ ନାହାନ୍ତି ସେଦିନ ମୁଁ ନିଜକୁ ବିଶ୍ଵାସ କରି ପାରିଲି ନାହିଁ । ମୋତେ ବିବ୍ରତ ହେବାର ଦେଖି କ୍ରୀଷ୍ଟା କହିଥିଲା 'ଭୁଷ୍ଟାକୁ ସାନ୍ତ୍ଵନା ଦେବାପାଇଁ ତୁମେ ଅନ୍ତତଃ ଧୈର୍ଯ୍ୟ ଧରିବା ଉଚିତ ।' ଭୁଷ୍ଟାକୁ ମୁଁ ସେଦିନ ଯାଇ କ'ଣ କହି ସାନ୍ତ୍ଵନା ଦେବି ସ୍ଥିର କରି ପାରି ନ ଥିଲି । ତେବେ ବିପଦରେ ଧୈର୍ଯ୍ୟ ଧରିବା ପାଇଁ ଯେତେଦୂର ପାରେ ତାକୁ ବୁଝାଇଥିଲି । ମୁଁ ଯଦି ସତ କହେ ତେବେ ମୋତେ ମାନିବାକୁ ହେବ, ସେଥିରେ ଭୁଷ୍ଟାର ନିଃସହାୟତା ମୁଁ ଯେତିକି ଉପଲବ୍ଧି କରି ନ ଥିଲି ତା'ଠାରୁ ଅଧିକ ମୋର ଭାବପ୍ରବଣତା ପ୍ରକାଶ ପାଇଥିଲା । ତା ସଙ୍ଗେ କଥାବାର୍ତ୍ତା ଓ ପତ୍ରାବଳୀରେ ମୋର ଅଧିକ ଥିଲା ଭାଷାର ମାୟାଜାଲ ଓ ଖୋଦ୍ ଗୋଟାଏ ଆଦାବ୍ କାଏଦା । ତା'ର ବୈଧବ୍ୟ ବ୍ୟଥା ମୁଁ ଯଥାର୍ଥରେ ଉପଲବ୍ଧି କରି ନ ଥିଲି । କ୍ରୀଷ୍ଟାର ମୃତ୍ୟୁ ପରେ ମୁଁ ଠିକ୍ ଭାବେ ଅନୁଭବ କରିଥିଲି । ଭୁଷ୍ଟାର ଯେ ଅପୂରଣୀୟ କ୍ଷତି ହେଲା, ତା ଆଜ ପୂରଣ ହୋଇ ପାରିବ ନାହିଁ ।

ଭୁଷ୍ଟାକୁ ଯେ ମୁଁ ଖୁବ୍ ଭଲ ପାଏ, କ୍ରୀଷ୍ଟା ଏ କଥା ବେଶ୍ ଜାଣିଥିଲା । ମୁଁ ଆଶଙ୍କା କରିଥିଲି ଏଥିପାଇଁ କ୍ରୀଷ୍ଟା ସଙ୍ଗେ ଅଯଥା ମତାନ୍ତର ହେବ । ଦୈନନ୍ଦିନ ଜୀବନରେ କେବେ କେବେ ବିଭ୍ରାଟ ଉପୁଜିବ; କିନ୍ତୁ ସେପରି କିଛି ହୋଇ ନ ଥିଲା । ଧୀରେ ଧୀରେ କ୍ରୀଷ୍ଟା ଆଉ ଭୁଷ୍ଟା ମଧ୍ୟରେ ସୌହାର୍ଦ୍ଦ୍ୟ ବୃଦ୍ଧି ପାଇଥିଲା । ସେମାନଙ୍କର ପରସ୍ପର ପ୍ରତି ଆନ୍ତରିକତା ମୋ ମନରେ ସୃଷ୍ଟି କରିଥିଲା ଅବର୍ଣ୍ଣନୀୟ ଆନନ୍ଦ । ଦୁଇଟି ଭିନ୍ନ ହୃଦୟର ମିଳନ ହେଲାପରି ମୋର ମନେ ହେଲା ।

ନୀଷ୍ଠା ମୋତେ ଅନେକବାର ପଚାରିଛି, ତୃଷ୍ଣାକୁ ତୁମେ ଏତେ ଭଲ ପାଅ, ତାକୁ ବିବାହ କଲ ନାହିଁ କାହିଁକି ? ଏହି ପ୍ରଶ୍ନରେ ନୀଷ୍ଠାର ତୃଷ୍ଣା ପ୍ରତି ଈର୍ଷା ନ ଥିଲା; ବ୍ୟକ୍ତିଗତ ଅଭିଯୋଗ ନ ଥିଲା । ଏକ ସୁସ୍ଥ ମନର ନିଷ୍ପାପ ହୃଦୟର ଏହି ଆବେଗପୂର୍ଣ୍ଣ ପ୍ରଶ୍ନର ଉତ୍ତର ସେ ମୋ'ଠାରୁ ଅନେକବାର ଚାହିଁଥିଲା । ଏହି ପ୍ରଶ୍ନର ଉତ୍ତରରେ ମୁଁ ଆପଣାର ସହପାଠିନୀକୁ ସହଧର୍ମିଣୀରୂପେ ବାଛି ନେବାରେ ଯେ ଅସୁବିଧା ତାହା ଦର୍ଶାଇଥିଲି । ନୀଷ୍ଠା ଦୃଢ଼ ଭାବରେ କହିଥିଲା, ଅମେ ଶିକ୍ଷିତା ଝିଅମାନେ ଏ କଥାରେ ବିଶ୍ୱାସ କରୁନାହିଁ । ତୃଷ୍ଣାକୁ ତୁମେ ବିବାହ କରିଥିଲେ ଖୁବ୍ ଭଲ ହୋଇଥା'ନ୍ତା। ସେ ତୁମକୁ ବହୁତ ଭଲ ପାଏ...।

ତୁମେ ତ କମ୍ ଭଲ ପାଅ ନାହିଁ ? ତୃଷ୍ଣା ଅସୁ । ମୁଁ ତାକୁ କହିବି ତୁମକୁ ବିବାହ କରି ମୁଁ କିପରି ଭୁଲ କରିଛି ? ତୃଷ୍ଣା ସ୍ମିତ ହସି କହେ—ହଁ କହିପାରି ମୋର କିଛି ଆପତ୍ତି ନାହିଁ ।

ନୀଷ୍ଠାର ମୃତ୍ୟୁ ମୋତେ କେତେ ଆଘାତ ଦେଇଛି ଓ ତା'ର ମୃତ୍ୟୁପରେ ତା'ର ସ୍ମୃତି ମୋ ନିକଟରେ କେତେ ଆପଣାର ଓ କିପରି ଅଧିକ ପ୍ରିୟ ହୋଇ ପାରିଛି ତାହା କେହି ବିଚାରକୁ ନେଲେ ନାହିଁ । ମୋ ପାଇଁ ପୁଣି ବିବାହ ପ୍ରସ୍ତାବ ଆସିଲା । ମୁଁ ବିବ୍ରତ ହୋଇ ଉଠିଲି । ଦୈନନ୍ଦିନ ଜୀବନର ଅଭାବ ଅସୁବିଧା ମଧ୍ୟରେ ଏ ବିବାହ କିପରି ମଣିଷର ଆୟୁ ପଳେ ପଳେ ନଷ୍ଟ କରେ ମୋତେ ସେ କଥା ବେଶ୍ ଜଣା ।

ଅନ୍ୟ କାହାକୁ ସହଧର୍ମିଣୀରୂପେ ଘରକୁ ଆଣିବାର ବାସନା ମୋର ନ ଥିଲା । ସମଦଶାସମ୍ପନ୍ନା ତୃଷ୍ଣାକୁ ତାର ମତ ପଚାରିଲି । ସେ ପ୍ରସ୍ତାବର ନୀରବ ସମର୍ଥନ କଲା । ଦୁଇଟି ବିକଳ

ପ୍ରାଣର ନୀରବ ବାସନା ଚରିତାର୍ଥ ହେବ । ଘରେ ଏ କଥା କେହି ସମର୍ଥନ କଲେ ନାହିଁ । ମୁଁ ଜିଦ୍ ଧରି ବସିଲି । ଭାଇ କହିଲେ, ବିବାହଟା ସମ୍ପୂର୍ଣ୍ଣ ବ୍ୟକ୍ତିଗତ କଥା । ନିଜେ ଯାହା ଇଚ୍ଛା ଯାହା ହେଉଛି କରୁ । ସେ ଛୋଟ ପିଲା ନୁହେଁ ।

ସହପାଠିନୀ କୃଷ୍ଣା ହେଲା ସ୍ତ୍ରୀ । ମୋର ଅନ୍ତର ବ୍ୟବହାର, ଚାଲିଚଲଣି ସହିତ ସେ ଘନିଷ୍ଠଭାବେ ପରିଚିତା । ତା ବିଷୟରେ ଜାଣିବାର ମଧ୍ୟ ମୋର ଅଭିକଳ୍ପ ନଥିଲା । ଭାବିଥିଲି କୃଷ୍ଣାକୁ ପାଇ କୀର୍ତ୍ତିକୁ ମୁଁ ଭୁଲିଯିବି । ଆଜି ସେ ବି, କିନ୍ତୁ ଦେଖିଲି କଣ୍ଟା ଧାର ଚିହ୍ନ ଲିଭିବ ନାହିଁ । ବ୍ୟଥା ଅବଶ୍ୟ ବହୁ ପରିମାଣରେ ଉପଶମ ହେଲା ।

ଗୋଟିଏ କଥା ଲକ୍ଷ କଲି । କୌଣସିଥିରେ କୃଷ୍ଣା ତୃପ୍ତ ନୁହେଁ । ସେ ଭାବୁଛି ସତେ ଯେପରି ତା'ର କାମଦାମରେ ମୁଁ ସନ୍ତୁଷ୍ଟ ନୁହେଁ । କୀର୍ତ୍ତି ପରି କୃଷ୍ଣା ମୋ ମନଲାଖି କାମ କରି ପାରୁନାହିଁ । ଏତେ ସମାଲୋଚନା, ଅଭିଯୋଗ ସତ୍ତ୍ୱେ ତା'ର ହାତ ଧରିଲି । କୃଷ୍ଣା ଦୃଷ୍ଟିରେ ମୁଁ ଉଦାରତାର ଅବତାର, ଦେବତା । ଅଥଚ ସେ...କିନ୍ତୁ ଏହି ... ଚେ ବିଶେଷ ଆଘାତ ଦେଉଥିଲା । କାରଣ ବିବାହ ପୂର୍ବରୁ ବନ୍ଧୁ ହିସାବରେ ସେ ମୋ ଉପରେ ଯେତେଟା ଦାବୀ କରି ବସୁଥିଲା ତାହା ଆଜି ରହିଲା ନାହିଁ । ସେ ସ୍ଥାନରେ ଆତ୍ମପ୍ରକାଶ କଲା ଏକ ବିନମ୍ର ହୃଦୟର ଆତ୍ମନିବେଦନ । ମୁଁ ତାହା ଚାହୁଁ ନ ଥିଲି । କୃଷ୍ଣାକୁ ବିବାହ କରି ମୁଁ ମୋତେ ଦୟା କରି ନ ... । ଏ କଥା ବହୁବାର ମୁଁ ତାକୁ କହିଛି । ହେଲେ ତାର କୌଣସି ପ୍ରତିକ୍ରିୟା ହୋଇନାହିଁ । ସମୟ ସମୟରେ ମୋତେ ମଧ୍ୟ ଖରାପ ଲାଗେ । କୀର୍ତ୍ତି ବଦଳରେ କୃଷ୍ଣାକୁ ପାଇଲି ସତ; ହେଲେ ବନ୍ଧୁଟିଏ ହରାଇବାକୁ ମୁଁ ପ୍ରସ୍ତୁତ ନ ଥିଲି ।

ବହୁ ସମୟରେ ମୋତେ ଖାଇବାକୁ ଦେଲାବେଳେ, ପଢ଼ିବାବେଳେ, ଶୋଇବାବେଳେ ତୃପ୍ତି କାନ୍ଦ ବସେ । ମୁଁ ସବୁ ବୁଝେ । ବୁଝାଇବାକୁ ଚେଷ୍ଟା କରେ ତୃପ୍ତି, ଅତୀତ ଫେରି ଆସିବ ନାହିଁ । ଧୈର୍ଯ୍ୟ ଧର । କାନ୍ଦିବା କିନ୍ତୁ ତାର ବନ୍ଦ ହୁଏ ନାହିଁ । କାନ୍ଦିବାର କାରଣ ପଚାରିଲେ ବେଳେ ବେଳେ ଉତ୍ତର ମିଳେ 'ମୋତେ ବିବାହ କରି ତୁମେ ସୁଖୀ ହୋଇ ପାରି ନାହଁ । ମୁଁ ବୁଝୁଛି; କିନ୍ତୁ ମୁଁ...... । ତୃପ୍ତିକୁ ମୁଁ ବୁଝି ପାରେନାହିଁ । ମୋ ନିକଟରେ ସେ ଅଧିକରୁ ଅଧିକ ହୁଏ ପ୍ରହେଳିକା । ଗବେଷଣାର ବସ୍ତୁ ।

ଶୀତର ଆଧିକ୍ୟ ସ୍ପଷ୍ଟ ଅନୁଭୂତ ହେଉଥିଲା । ଘୋଡ଼ହେଲା ଦେହରୁ ଖସିଯାଇ ଥଣ୍ଡା ଲାଗିବା ହେତୁ ମୋ ନିଦ ଭାଙ୍ଗିଗଲା । ପାଖରେ ଶୋଇ ତୃପ୍ତି କାନ୍ଦୁଥିଲା । ବେଳେ ବେଳେ ରାତିରେ ଏହିପରି କାନ୍ଦିବା ତା ପକ୍ଷେ କିଛି ନୂଆ ନୁହେଁ ।

ପଚାରିଲି, 'କାନ୍ଦୁଛ କାହିଁକି ? ସ୍ୱପ୍ନ ଦେଖିଲ ? ମୋତେ କୌଣସି ଉତ୍ତର ନ ଦେଇ ମୋ ଛାତି ଉପରେ ମୁହଁ ରଖି ଅଧିକ ନିଃସହାୟ ଭାବେ ସେ କାନ୍ଦିବାକୁ ଲାଗିଲା । ମୁଁ ଭାବିଲି, ସେ ସନ୍ତୋଷକୁ ସ୍ୱପ୍ନ ଦେଖିଲା । ଏପରି ଏକ ସ୍ୱପ୍ନ ଦେଖିବା ସ୍ୱାଭାବିକ । ମୁଁ ପୁଣି ପ୍ରଶ୍ନ କଲି, କ'ଣ ସନ୍ତୋଷକୁ ସ୍ୱପ୍ନ ଦେଖିଲ ? ସ୍ୱପ୍ନ ଦେଖିଲ କିନ୍ତୁ ସନ୍ତୋଷବାବୁଙ୍କୁ ନୁହେଁ । ତେବେ କି ସ୍ୱପ୍ନ ? କଣ ହେଲା ସେଠୁ ? ବ୍ୟସ୍ତ ହେବାର କଣ ଅଛି ?

ତୃପ୍ତି ଅଧିକ ନିଃସହାୟ ହୋଇ ବ୍ୟଥିତ କଣ୍ଠରେ କହିଲା, ମୋତେ କିଛି ପଚାରନାହିଁ । ମୁଁ କହି ପାରିବି ନାହିଁ ।

କି ସ୍ୱପ୍ନ ଦେଖିଲ ? ମୁଁ ମରିଯାଇଛି ଓ ପୁଣି ଥରେ ତୁମକୁ ତୁମ ହାତର ଚୁଡ଼ି ଭାଙ୍ଗିବାକୁ ପଡ଼ୁଛି, ଏଇତ··· ?

ଏହି ବାକ୍ୟଟି ଶେଷ କରିବାକୁ ନ ଦେଇ ସେ ମୋ ପାଟି ଉପରେ ହାତ ରଖି କହିଲା ଏଗୁଡ଼ା ପାଟିରେ ଧର ନାହିଁ । ମୋ ରାଣ । ମୁଁ ମରିଯାଏ । ହୀନ କପାଳ ମୋର ।

'ଏଥିରେ ବ୍ୟସ୍ତ ହେବାର କ'ଣ ଅଛି ? ସ୍ୱପ୍ନ ସତ୍ୟ ହୁଏ ନାହିଁ । ତୁମେ ଶୋଇପଡ଼ ।' ତୃଷ୍ଣା ନ ଶୋଇ ଅଧିକ ଜୋରରେ ମୋତେ ଧରି ବ୍ୟଥିତ କଣ୍ଠରେ କହିଲା, 'ମୋତେ ତୁମେ ଆଉ ବୁଝାଅ ନାହିଁ । ମୁଁ ଛୋଟ ପିଲା ନୁହେଁ, ସବୁ ବୁଝିଛି ।'

ବେଡ୍ ସୁଇଚ୍‌ଟା ହଠାତ୍ ଟିକ୍ କରି ଉଠିଲା । ମୋତେ ତୃଷ୍ଣା କହିଲା, 'ଚାହିଁ, ଡ୍ରେସିଂ ଟେବୁଲ ଦର୍ପଣକୁ । ଆଜ ଦାଅ ଦେଖି ଫେରିଲା ବେଳକୁ ଦର୍ପଣଟା ଫାଟିଯାଇଛି ।' ମୋର ହଠାତ୍ ମନେ ପଡ଼ିଲା, ସନ୍ତୋଷର ମୃତ୍ୟୁ ପୂର୍ବରୁ ଦାଅ ଦେଖି ଫେରିବା ପରେ ଯେଉଁ ଅବସ୍ଥାରେ ତୃଷ୍ଣା ଦେଖିଥିଲା ଓ ଦର୍ପଣଟା ଫାଟିଥିଲା ଆଜ ଠିକ୍ ସେଇଆ ହୋଇଛି ।

ମୁଁ ଦର୍ପଣକୁ ଚାହିଁଲି । ଦେଖିଲି, ଦର୍ପଣଟା ଦୁଇଫାଳ ହୋଇ ଫାଟିଯାଇଛି । ମୁହୂର୍ତ୍ତିକ ଲାଗି ମୁଁ କିଛି କହି ପାରିଲି ନାହିଁ । ଅବଶ୍ୟ ଏଥିରେ ମୁଁ ମୋଟେ ଭୟଭୀତ ହୋଇ ନଥିଲି । ମୁଁ କହି-ଥିଲି ,'ତୃଷ୍ଣା ! ମରିବାରେ ଗୌରବ ନାହିଁ ଗୌରବ ଅଛି ବଞ୍ଚିବାରେ । ଦିନେ ନା ଦିନେ ମରିବାକୁ ହେବ । ତେଣୁ ସେଥିପାଇଁ ବ୍ୟସ୍ତ ନ ହୋଇ ବରଂ ଆମେ ଯେତେଦିନ ବଞ୍ଚିଛେ ତାହା ଯେପରି ଉପଭୋଗ୍ୟ ହୁଏ ସେଥିପାଇଁ ଚେଷ୍ଟା କରିବା ଉଚିତ । ଚାଲ ଶୋଇବା ଚାଲ । ବହୁତ ଡେରି ହେଲାଣି । ଆଜ ଦିନସାରା ତାହା ହେଲେ କାନ୍ଦୁଛ ? ତୁମ ଆଖିରୁ ବେଶ୍ ····· ।

ମୁଁ ବେଡ଼ ସୁଇଚଟା ଧରିଲି । କକ୍ଷ ମୋର ପୂର୍ବପରି ଅନ୍ଧକାର ହୋଇଉଠିଲା । ସେହି ଅନ୍ଧକାର ମଧ୍ୟରେ ମୁଁ ଅନୁଭବ କଲି ତୃଷ୍ଣା ହାତର ସ୍ପର୍ଶ ମୋର ଲଲାଟ ଉପରେ । ମୁଁ କହିଲି,'ତୃଷ୍ଣା ଭୟର କୌଣସି କାରଣ ନାହିଁ । ଭଗବାନ ଅଛନ୍ତି । ଶୁଣିଲି, ବ୍ୟଥିତ ତଥା ଅସହାୟ କଣ୍ଠର ଏକ ମର୍ମଭେଦୀ ଧ୍ୱନି ।

"ତୁମେ ଭୁଲ କରୁଛ ।" ଶୋଇପଡ଼ । ଅନେକ ଡେରି ହେଲାଣି ।

ମୋ କଥା ମାନି ତୃଷ୍ଣା ଖସି ଯାଇଥିବା ଯୋଡ଼ହେଲା ଦେହ ଉପରକୁ ଉଠାଇଲା । ଗ୍ଲାଡ ଉପରେ ମୋର ରହିଯାଇଥିଲା ତୃଷ୍ଣା ନୟନର କେଇ ଟୋପା ଉଷ୍ମ ଅଶ୍ରୁ-ବିନ୍ଦୁ ।

---

* ସାହିତ୍ୟ ସଂସଦ "ଶୈଶିର ସ୍ମରଣିକା"
୧୯୭୨



# ସନ୍ଧ୍ୟାସନୀ

ଦୁର୍ବାଦଳ, ଶ୍ୟାମଳ ଦୁର୍ବାଦଳ,

ଶିଶିରସିକ୍ତ ରାଜପଥର ଉଭୟ ପାର୍ଶ୍ୱରେ ଲମ୍ବି ରହିଛି । ଚତୁର୍ଦ୍ଦିଗ ନୀରବ, ନିସ୍ତବ୍ଧ । ଶ୍ୟାମାକାନ୍ତ କ୍ଷଣଟିଏ ଥମିଯାଇ ସବୁ ଦିଗକୁ ନିରୀକ୍ଷଣ କରିନେଲେ । ନା କେହି ନାହିଁ । ଆକାଶରେ କେବଳ ଚନ୍ଦ୍ର ଚାହିଁ ରହିଛି । କି ସୁନ୍ଦର ମନମତାଣିଆ ଏ ପରିବେଶ । ମନ ଯେ ତାଙ୍କର ଏତେ ଚଞ୍ଚଳ, ଅସ୍ଥିର ସେଥିପାଇଁ ସେ ଏ ଚନ୍ଦ୍ର ବ୍ୟତୀତ ଅନ୍ୟ କାହାକୁ ଅଭିଶାପ ଦେଇ ପାରିବେ ନାହିଁ ।

ଶ୍ୟାମାକାନ୍ତ କଣ ଭାବିଲେ କେଜାଣି ହଠାତ୍ ରାଜପଥରୁ ଯେଉଁ ଛୋଟ ରାସ୍ତାଟି ସେହି ଖପର ଛାଆଣି ଘର ଆଡ଼କୁ ଲମ୍ବି ଯାଇଛି ସେଇ ଦିଗରେ ସେ ଆଗେଇ ଚାଲିଲେ । ଏ ସେଇ ଘର । ସେଠି ଥାଏ ସୁଚରିତା । ସୁନ୍ଦରୀ ଯୁବତୀ ସେ । ତନୁରେ ତାର ରୂପର ତେଜ । କଥାରେ ଛନ୍ଦ । ଚାହାଣିରେ ତୃଷ୍ଣା । ଏ ଯୁଗରେ ସେ ମାଟିର ମେନକା । ସେଠି ସେ ରୂପର ପସରା ମେଲାଇ ବସିଥାଏ । ଦେହ ବିକେ, ସାମାନ୍ୟ ଅର୍ଥର ବିନିମୟରେ । ଗୃହସ୍ଥ ଯାଆନ୍ତି ସେଠିକୁ; ସେଠିକୁ ଯାଆନ୍ତି ବୃଦ୍ଧ, ଅବିବାହିତ ଯୁବକ, ଶିକ୍ଷିତ, ଅଶିକ୍ଷିତ ସମସ୍ତେ । ପୂଣ୍ୟତୀର୍ଥ ସେ ଭୂମି । କେଇଟି ମୁହୂର୍ତ୍ତ ପାଇଁ ମଣିଷ ସେଠି ନିଜକୁ ଭୁଲିଯାଏ । ପାପ-ପୂଣ୍ୟ, ଆକାଶ ମାଟି, ସ୍ୱର୍ଗ-ନର୍କ, ହାସ୍ୟ-ଅଶ୍ରୁର ପାର୍ଥକ୍ୟ । ମଣିଷ ସେଠି ଦେଖିପାରେ ନାହିଁ । ସମସ୍ତେ ପୁଣି ଫେରି ଆସନ୍ତି । ଅବଶ ଅଙ୍ଗଲତା ତାର ନିସ୍ତେଜ ହୋଇ ପଡ଼ିରହେ । ପୂର୍ବ ଆକାଶରେ ସକାଳ ଆତ୍ମପ୍ରକାଶ କରେ । କାହିଁ କେହି ତ ଜଣେ ହେଲେ ତାଙ୍କୁ ସଙ୍ଗରେ ନେଲେ ନାହିଁ । ତେବେ ସେ ସହାନୁଭୂତି, ସେ ସରାଗଭୋଳା କଥାର ମୂଲ୍ୟ କେଉଁଠି ? ସବୁ ମିଥ୍ୟା, ସବୁ କ୍ଷଣିକ, ଅଳୀକ, ପ୍ରବଞ୍ଚନା । ତେବେ ସେ ସେମାନଙ୍କ ଠାରୁ ତାର ନାନ୍ୟ ପ୍ରାପ୍ୟଟା ଆଦାୟ ନ କରିବ କାହିଁକି ? ମନେ ମନେ ସୁଚରିତା ଚିନ୍ତାକରେ ।

ହଠାତ୍ ଅପରିଚିତ ଶ୍ୟାମାକାନ୍ତଙ୍କୁ ଦେଖି ସେ ଚମକି ପଡ଼ିଲା । ଏ କିଏ ? କେଉଁଠି ଦେଖିଛି ନିଶ୍ଚୟ । ଚିହ୍ନିଲାପରି ମନେ ହେଉଛି ! ପରିଚିତ ଏ ମୁହଁ । ମୁହଁରେ ସାମାନ୍ୟ ଦାଢ଼ି । ଚକ୍ଷୁରେ ଚଷମା, ପରିଧେୟ ଖଦଡ଼ ବସ୍ତ୍ର । ଦେହରେ ଚଦର । କାନ୍ଧରେ ଶାନ୍ତିନିକେତନ ଝୁଲି ଝୁଲୁଛି । ଏ ମହାଶୟ ତ ବେଳେ ବେଳେ ସଭା ସମିତିରେ ଭାଷଣ ଦିଅନ୍ତି । ଶୋଭାଯାତ୍ରା ବେଳେ ଟ୍ରକରେ

ଚଢ଼ି ପ୍ରଥମ ଧାଡ଼ିରେ ଠିଆ ହୋଇ ସ୍ଲୋଗାନ ଦେଉଛନ୍ତି । କେତେଥର ତାଙ୍କୁ ଦେଖିଛି ଏଇ ରାସ୍ତାରେ । ଦଳକପାଇଁତ ଭୁଲରେ ଆସି ନଥିଲେ । ଆଜି ଅଧେନରେ ଏ ଶୁଭାଗମନର କାରଣ କଣ ସୁଚରିତା ସାମାନ୍ୟ ହସିଲା ମନେ ମନେ । ଏଇ ବୟସରେ ମଧ୍ୟ ମାଂସର ଆକର୍ଷଣ ତାଙ୍କ ପକ୍ଷରେ ତ କିଛି କମ ନୁହେଁ । ଅଳ୍ପ କେଇଟି ମିନିଟ ମଧ୍ୟରେ ସେ ବୁଝିନେଲା । ନିର୍ବାଚନ କାମରେ ସେ ବ୍ୟସ୍ତ ଥିଲେ । ଅଫିସରୁ ଫେରୁ ଫେରୁ ବିଳମ୍ବ ହୋଇ-ଯାଇଛି । ଭୋଟ କଥା କହିବା ପାଇଁ ଏଠିକୁ ଚାଲି ଆସିଛନ୍ତି ପରା ! ଏଇ ଗଣତନ୍ତ୍ରରେ ଗଣିକାର ମଧ୍ୟ ଭୋଟ ଦେବାର ଅଧିକାର ଅଛି । ଆମ ସ୍ୱାଧୀନ ସରକାର ତାଙ୍କୁ ସମ୍ମାନ ଦିଏ । ସେହି ସୁଦିନରେ ନିଜର ଅଧିକାରର ସଦ୍‌ବ୍ୟବହାର କରିବା ପାଇଁ ସେ ଭୁଲି ଯିବା ଉଚିତ ନୁହେଁ । ସେହି କଥାଟି ସ୍ମରଣ କରାଇ ଦେବାପାଇଁ ଏତେ ପରିଶ୍ରମ କରି ସେ ଶୀତ ରାତିରେ ଚାଲି ଆସିଛନ୍ତି କେବଳ । ଦେଶପ୍ରେମୀ ଏ । ଜାତିର ଗୁରୁଦାୟିତ୍ୱ ଆଜି ତାଙ୍କରି ଉପରେ ନ୍ୟସ୍ତ । ସେ ଏ ଜାତିକୁ ଗଢ଼ିବେ ।

ଶ୍ୟାମାକାନ୍ତ ହସହସ ମୁହଁରେ ଏକ ନିଶ୍ୱାସରେ କହି ଚାଲିଲେ······ବୁଝିଲ ଏଇ କଂଗ୍ରେସ ହେଉଛି ଏକମାତ୍ର ଦଳ । ଯେ କି ଏ ଘୃଣିତ ବୃତ୍ତିକୁ ସମୂଳେ ବିନାଶ କରି ତୁମ୍ଭମାନଙ୍କୁ ସମାଜରେ ଯଥୋଚିତ ସମ୍ମାନ ଦେବାପାଇଁ ଚେଷ୍ଟା ଚଳାଇଛି । ଏହି ଦଳର ରାଜାଜୀ ଥିଲାବେଳେ ବେଶ୍ୟାବୃତ୍ତି ଉତ୍ପାଟନ କରିବା ପାଇଁ କିପରି ସତତ୍ ବ୍ୟଗ୍ର ଥିଲେ ତାହା ତୁମେ ଜାଣ । ତୁମେ ଅନ୍ତତଃ ମୋର ଅନୁରୋଧ ରକ୍ଷା କରି ଆମକୁ ଭୋଟ ଦେବ । ସୁଚରିତା ନତଶିରରେ ସମ୍ମତି ପ୍ରଦାନ କଲା ।

କିଛି ସମୟ ଆଳାପ ପରେ ହଠାତ୍ ସୁଚରିତାର ହାତଟିକୁ ଟାଣି ଆଣି ଆଗନ୍ତୁକ କହିଲେ ଦେଖି ଦେଖି ତୁମର ହାତ । ପ୍ରଶ୍ନ କଲେ—ଏ ମୁଦିଟି କେଉଁଠି କା ଗଢ଼ା ? ବେଶ୍ ଚମତ୍କାର ହୋଇଛି ତ । ତୁମ ଅଙ୍ଗୁଳିକୁ ବେଶ୍ ମାନୁଛି । ବୃଦ୍ଧଙ୍କ ଅଭିପ୍ରାୟ ବୁଝିବା ପାଇଁ ସୁଚରିତାକୁ ଆଉ ଅଧିକ ସମୟ ଲାଗିଲା ନାହିଁ । ଦିନେ ତ ଏମିତି କଲେଜର ଅଧ୍ୟାପକ ଆସିଥିଲେ । ହାତ ଦେଖି କହିଥିଲେ ସେ ଭାଗ୍ୟବତୀ । ଦୀର୍ଘ ଜୀବନ ପାଇଛି । କି ଭାଗ୍ୟରେ ସତେ ! ଅଜଣାର ଅନିଚ୍ଛାସତ୍ତ୍ୱେ ଯେ ଗଳାରେ ଏକାଧିକ ପୁରୁଷର ବାହୁର ସ୍ପର୍ଶ ଅନୁଭବ କରେ ସେ ଭାଗ୍ୟବତୀ ନୁହେଁତ ଆଉ କିଏ ? କାହା କଥା ସେ ସ୍ମରଣ କରିବ ? ଏସ୍ ପି.ଓ., ଏସ୍.ପି., ଅଧ୍ୟାପକ, ଛାତ୍ର, କିରାଣି କିଏ ନ ଆସିଛି ? ତାର କୃଷ୍ଣ-କୋଣାର୍କ କବରୀରେ ମଲ୍ଲିହାରର ଗନ୍ଧ ଆଘ୍ରାଣ ନ କରିଛି କିଏ ? ସମସ୍ତେ ସୁବିଧା ଓଣ୍ଡି ଆସିଛନ୍ତି, ଆଉ ବାହୁଡ଼ି ଯାଇଛନ୍ତି । ଏହାପରେ କୌଣସି ଗୋଟିଏ କଥାର ଅନ୍ତ କର ।

ରଜନୀଗନ୍ଧାର ସୁବାସ ଭାସି ଆସିଛି ବାତାୟନର ମଧ୍ୟ ଦେଇ । ସଧ୍ୟା ତମାଳ ନାଚି ଉଠିଛି ମନ୍ଦ ପବନର ଛନ୍ଦେ ଛନ୍ଦେ ଶ୍ୟାମାକାନ୍ତ ନିଜର ବାହୁ ମଧ୍ୟରେ ବାନ୍ଧି ନେଇଛନ୍ତି ସୁଚରିତାକୁ । କରିଛନ୍ତି ଅଶ୍ଳେଷ । ଦିନ ଅଶ୍ଳେଷ, ମୁଖ ତାଙ୍କର ହୋଇ ଉଠିଛି ମୁଖର, ସୁଚରିତାର ପ୍ରଶଂସରେ । ସେ ସୁନ୍ଦରୀ, ଲୋଭନୀୟା, କୁଳବଧୂ ହେବା ପାଇଁ ଯୋଗ୍ୟା । 'କୁଳବଧୂ' ଶବ୍ଦଟି ଶୁଣି ସୁଚରିତା ପ୍ରାଣରେ ସୃଷ୍ଟି ହୋଇଛି ଚମକ । ଅଶ୍ରୁ ଲଂଘିଛି ତାର କଜ୍ଜଳଡୋଳା ସୀମାଧାର । ଦିନେ ସେ କୁଳବଧୂ ହେବା ପାଇଁ ଯାଉଥିଲା । କିନ୍ତୁ ଭାଗ୍ୟର ବିଡ଼ମ୍ବନା । ସେ କୁଳବଧୂର

ଗୌରବରୁ ହେଳ ବଂଚିତା, ଅବସ୍ଥାର ଶାସନ ମାନି ସେ ହୋଇଛନ୍ତି ଗଣିକା । ସମାଜ ଚକ୍ଷୁରେ ସେ ଘୃଣ୍ୟ । ସବୁରିର ଦୟାର ପାତ୍ରୀ ।

ସେ ହଠାତ୍ ପ୍ରଶ୍ନ କଲା—କଣ ମୁଁ ପୁଣି କୁଳବଧୂ ହୋଇ ପାରିବି !

"ନ ହେବ କାହିଁକି ?"

ତେବେ ଆପଣ ମୋତେ ବିବାହ କରନ୍ତୁ । ଆପଣତ ଅଜ ସୁଦ୍ଧା କୁମାର, ଦେଶସେବୀ । ଆମ୍ଭମାନଙ୍କୁ ସାହାଯ୍ୟ କଲେ ଦେବତା ଆପଣଙ୍କର ମଙ୍ଗଳ କରିବେ । ସମାଜରେ ଆମମାନଙ୍କୁ ଯଥାସମ୍ମାନରେ ସମ୍ମାନିତ କରିବା କଣ ଦେଶ ସେବା ନୁହେଁକି ?

ଏହା ଶୁଣି ଶ୍ୟାମାକାନ୍ତଙ୍କ ତଣ୍ଟି ଶୁଖିଗଲା । ସେ ଖନେଇ ଖନେଇ କହିଲେ, "ମୋତେ କାହିଁକି ବିବାହ କରିବ । ମୁଁ ଆଜି କେଇଟା ଦିନ ବଞ୍ଚିବି । ଶ୍ମଶାନ ପଥର କେତେବେଳେ ଯେ ଝଡ଼ି ପଡ଼ିବ ତାର ଠିକ୍ ନାହିଁ । ଜଣେକ ଯୁବକ ମୁଁ ତୁମ ପାଇଁ ଯୋଗାଡ଼ କରିଦେବି । ତୁମେ ତାର ହାତଧରି ସୁଖୀ ହେବ । ମୋ ହାତଧରି କେବଳ ବୈଧବ୍ୟ ଯନ୍ତ୍ରଣାଟା ସହିବା ସାର ହେବ ସିନା । ହୁଏତ ହାତରେ ଶଙ୍ଖା ପିନ୍ଧିବାରି ନ ଥିବ, ଲଲାଟରେ ସିନ୍ଦୂର ଗାର ଲଗାଇବାକୁ ପଡ଼ିବ ତୁମକୁ ।

ସେତିକି ମୋର ଲୋଡ଼ା, କହି ବସ ଦେବତାର ଉଦ୍ଦେଶ୍ୟରେ ଜଣାଇଲା ପ୍ରଣତି । ସେତିକି ମୋତେ ଆଶୀର୍ବାଦ କରନ୍ତୁ । ମୁଁ ବିଧବା ହୁଏ । ସମାଜରେ ଗଣିକା ହୋଇ ଚିର ସଧବା ହେବାର ବାସନା ମୋର ନାହିଁ । ଯୁବକର ହାତଧରି ଦୀର୍ଘଦିନ କୁଳବଧୂ ହେବାର ଅକାଂକ୍ଷା ମଧ୍ୟ ମୋର ନାହିଁ । କଣ କହୁଛନ୍ତି ? ମୋତେ

ବିବାହ କରିବାର ପ୍ରଲୋଭନ ଦେଖାଇଥିଲେ ଅଧ୍ୟାପକ ଦାସ । ଏମ୍. ପି. ଶ୍ରୀଯୁକ୍ତ ମିଶ୍ର । ଆଜି ବୁଝୁଛି ସେସବୁ କେବଳ ଗୋଟାଏ ମୁହୂର୍ତ୍ତର ପ୍ରତାରଣା । ବିକାରଗ୍ରସ୍ତ ମନର ଦୁର୍ବଳ ପ୍ରତିଜ୍ଞା । କିନ୍ତୁ ଆଜି ଆପଣଙ୍କ କଥା ଉପରେ ମୋର ବିଶ୍ୱାସ ଆସିଛି । ଦେଶପ୍ରେମୀ ଆପଣ । ଗାନ୍ଧି ଭକ୍ତ ଆପଣ, ବିନୋବାଙ୍କ ସହକର୍ମୀ ଆପଣ । ଆପଣ ମୋର ସ୍ୱପ୍ନ ସାର୍ଥକ କରିବେ । ଆପଣଙ୍କ କଥା ଆପଣ ରକ୍ଷା କରିବେ । ମନସ୍କାମନା ମୋର ପୂର୍ଣ୍ଣ ହେବ । ନର୍କରୁ ଆପଣ ମୋତେ ଉଦ୍ଧାର କରିବେ । କାଚ କାଞ୍ଚନ ସଂସର୍ଗରେ ଆସିଲା ପରି ମୁଁ ଆପଣଙ୍କ ସଙ୍ଗରେ ଆସି ହୋଇ ଉଠିବି ପବିତ୍ରା, ପୁଣ୍ୟବତୀ, ଧର୍ମପ୍ରାଣା କୁଳଲକ୍ଷ୍ମୀ । ନାରୀ ଜନ୍ମ ମୋର ହେବ ଚରିତାର୍ଥ ।

ସାମାନ୍ୟ ବିସ୍ମୟ ଖେଳାଇ ସେ ପ୍ରଶ୍ନ କଲେ କଣ ଅଧ୍ୟାପକ ଦାସ ଏଠିକୁ ବି ଆସନ୍ତି । ତାଙ୍କର ପରା ସ୍ତ୍ରୀ ଅଛନ୍ତି । ହଁ ସ୍ତ୍ରୀ ଅଛନ୍ତି ତାଙ୍କର । କାରଣେ, ସେ କରିଛନ୍ତି କଣ୍ଟ୍ରାକ୍ଟ୍ ମ୍ୟାରେଜ ଶ୍ରୀମତୀ ବାନାର୍ଜୀଙ୍କୁ । ଶ୍ରୀଭବନର ତତ୍ତ୍ୱାବଧାରିକା ସେ । ରୂପର ଆକର୍ଷଣ ଏଡ଼ିଦେଇ ନପାରି ସେ ବନାର୍ଜୀଙ୍କୁ ବିବାହ କରିଥିଲେ ଦୁଇଟି ବର୍ଷ ପାଇଁ । କିନ୍ତୁ ରୂପର ଆଭିଜାତ୍ୟ ତାଙ୍କୁ ଯେତିକି ଆନନ୍ଦ ଦେଉଛି ତାଙ୍କର କର୍କଶ ଶାସନ ତାଠାରୁ ଝରାଉଛି ଅଧିକ ଅଶ୍ରୁ ନୟନରୁ । ସେହି ଅଶ୍ରୁ ଟିକେଇଟୋପା ପୋଛି ଦେବା ପାଇଁ ସେ ପାଗଳଙ୍କ ପରି ଧାଇଁ ଆସନ୍ତି ମୋର କୁଡ଼ିଆକୁ ଏଇ ସୁଚରିତ୍ରାର ନିକଟକୁ ।

କଣ ଶ୍ରୀମତୀ ବାନାର୍ଜୀ ପୁଣି ଏପରି ନିର୍ଦ୍ଦୟା ହୋଇ ପାରନ୍ତି ! ସେ'ତ ବେଶ ଶାନ୍ତ, ଭଦ୍ର । ଛାତ୍ରୀମାନଙ୍କର ଭାରି ପ୍ରିୟ ! ହଁ ସେ

ଗୌରବରୁ ହେଲ ବଂଚିତା, ଅବସ୍ଥାର ଶାସନ ମାନି ସେ ହୋଇଛନ୍ତି ଗଣିକା । ସମାଜ ଚକ୍ଷୁରେ ସେ ଘୃଣ୍ୟ । ସବୁରିର ଦୟାର ପାତ୍ରୀ ।

ସେ ହଠାତ୍ ପ୍ରଶ୍ନ କଲା—କଣ ମୁ ପୁଣି କୁଳବଧୂ ହୋଇ ପାରିବ !

"ନ ହେବ କାହିଁକି ?"

ତେବେ ଅପଣ ମୋତେ ବିବାହ କରନ୍ତୁ । ଆପଣତ ଅଜ ସୁଦ୍ଧା କୁମାର, ଦେଶସେବୀ । ଅମ୍ଭମାନଙ୍କୁ ସାହାଯ୍ୟ କଲେ ଦେବତା ଆପଣଙ୍କର ମଙ୍ଗଳ କରିବେ । ସମାଜରେ ଆମମାନଙ୍କୁ ଯଥାସମ୍ମାନରେ ସମ୍ମାନିତ କରିବା କଣ ଦେଶ ସେବା ନୁହେଁକି ?

ଏହା ଶୁଣି ଶ୍ୟାମାକାନ୍ତଙ୍କ ଛାତି ଶୁଖିଗଲା । ସେ ଖନେଇ ଖନେଇ କହିଲେ, "ମୋତେ କାହିଁକି ବିବାହ କରିବ । ମୁଁ ଆଜ କେଇଟା ଦିନ ବଞ୍ଚିବି । ଶୃଙ୍ଖଳ ପରର କେତେବେଳେ ଯେ ଝଡ଼ ପଡ଼ିବ ତାର ଠିକ୍ ନାହିଁ । ଜନୈକ ଯୁବକ ମୁଁ ତୁମ ପାଇଁ ଯୋଗାଡ଼ କରିଦେବି । ତୁମେ ତାର ହାତଧରି ସୁଖୀ ହେବ । ମୋ ହାତଧରି କେବଳ ବୈଧବ୍ୟ ଯନ୍ତ୍ରଣାଟା ସହିବା ସାର ହେବ ସିନା । ହୁଏତ ହାତରେ ଶଙ୍ଖା ପିନ୍ଧିବାରି ନ ଥିବ, ଲଲାଟରେ ସିନ୍ଦୁର ଗାର ଲଗାଇବାକୁ ପଡ଼ିବ ତୁମକୁ ।

ସେତିକି ମୋର ଲୋଡ଼ା, କହି ସେ ଦେବତାର ଉଦ୍ଦେଶ୍ୟରେ ଜଣାଇଲା ପ୍ରଣତି । ସେତିକି ମୋତେ ଆଶୀର୍ବାଦ କରନ୍ତୁ । ମୁଁ ବିଧବା ହୁଏ । ସମାଜରେ ଗଣିକା ହୋଇ ଚିର ସଧବା ହେବାର ବାସନା ମୋର ନାହିଁ । ଯୁବକର ହାତଧରି ଅର୍ଘଦାନ କୁଳବଧୂ ହେବାର ଆକାଂକ୍ଷା ମଧ୍ୟ ମୋର ନାହିଁ । କଣ କହୁଛନ୍ତି ? ମୋତେ

ବିବାହ କରିବାର ପ୍ରଲୋଭନ ଦେଖାଇଥିଲେ ଅଧ୍ୟାପକ ଦାସ । ଏମ୍. ପି. ଶ୍ରୀଯୁକ୍ତ ମିଶ୍ର । ଆଜି ବୁଝୁଛି ସେସବୁ କେବଳ ଗୋଟାଏ ମୁହୂର୍ତ୍ତର ପ୍ରତାରଣା । ବିକାରଗ୍ରସ୍ତ ମନର ଦୁର୍ବଳ ପ୍ରତିଜ୍ଞା । କିନ୍ତୁ ଆଜି ଆପଣଙ୍କ କଥା ଉପରେ ମୋର ବିଶ୍ୱାସ ଆସିଛି । ଦେଶପ୍ରେମୀ ଆପଣ । ଗାନ୍ଧି ଭକ୍ତ ଆପଣ, ବିନୋବାଙ୍କ ସହକର୍ମୀ ଆପଣ । ଆପଣ ମୋର ସ୍ୱପ୍ନ ସାର୍ଥକ କରିବେ । ଆପଣଙ୍କ କଥା ଆପଣ ରକ୍ଷା କରିବେ । ମନସ୍କାମନା ମୋର ପୂର୍ଣ୍ଣ ହେବ । ନର୍କରୁ ଆପଣ ମୋତେ ଉଦ୍ଧାର କରିବେ । କାଚ କାଞ୍ଚନ ସଂସର୍ଗରେ ଆସିଲା ପରି ମୁଁ ଆପଣଙ୍କ ସଙ୍ଗରେ ଆସି ହୋଇ ଉଠିବି ପବିତ୍ରା, ପୂଣ୍ୟବତୀ, ଧର୍ମପ୍ରାଣା କୁଳଲକ୍ଷ୍ମୀ । ନାରୀ ଜନ୍ମ ମୋର ହେବ ଚରିତାର୍ଥ ।

ସାମାନ୍ୟ ବିସ୍ମୟ ଖେଳାଇ ସେ ପ୍ରଶ୍ନ କଲେ କଣ ଅଧ୍ୟାପକ ଦାସ ଏଠିକୁ ବି ଆସନ୍ତି । ତାଙ୍କର ପରା ସ୍ତ୍ରୀ ଅଛନ୍ତି । ହଁ ସ୍ତ୍ରୀ ଅଛନ୍ତି ତାଙ୍କର । ଜାଣେ, ସେ କରିଛନ୍ତି କଣ୍ଟ୍ରାକ୍ଟ ମ୍ୟାରେଜ ଶ୍ରୀମତୀ ବାନାର୍ଜୀଙ୍କୁ । ଶ୍ରୀଭବନର ତତ୍ତ୍ୱବଧାରିକା ସେ । ରୂପର ଆକର୍ଷଣ ଏଡ଼ିଦେଇ ନପାରି ସେ ବନାର୍ଜୀଙ୍କୁ ବିବାହ କରିଥିଲେ ଦୁଇଟି ବର୍ଷ ପାଇଁ । କିନ୍ତୁ ରୂପର ଆଭିଜାତ୍ୟ ତାଙ୍କୁ ଯେତିକି ଆନନ୍ଦ ଦେଇଛି ତାଙ୍କର କର୍କଶ ଶାସନ ତାଠାରୁ ଢେରିଗୁଣ ଅଧିକ ଅଶ୍ରୁ ନୟନରୁ । ସେହି ଅଶ୍ରୁ କେଇଟୋପା ପୋଛି ଦେବା ପାଇଁ ସେ ପାଗଳଙ୍କ ପରି ଧାଇଁ ଆସନ୍ତି ମୋର କୁଡ଼ିଆକୁ ଏଇ ସୁଚରିତ୍ରାର ନିକଟକୁ ।

କଣ ଶ୍ରୀମତୀ ବାନାର୍ଜୀ ପୁଣି ଏପରି ନିର୍ଦ୍ଦୟା ହୋଇ ପାରନ୍ତି ! ସେ'ତ ବେଶ ଶାନ୍ତ, ଭଦ୍ର । ଛାତ୍ରୀମାନଙ୍କର ଭାରି ପ୍ରିୟ ! ହଁ ସେ

ସମ୍ମାନାସ୍ପଦ ନହେବେ କାହିଁକି ? ଶିକ୍ଷିତା ସେ, ସୁନ୍ଦରୀ ସେ । ନିଜର ସ୍ୱାର୍ଥପାଇଁ, ସୁବିଧାପାଇଁ ବର୍ଷକୁ ଗୋଟିଏ ଲେଖାଏଁ ପତି ବରଣ କରିବାପାଇଁ ସେ ପଶ୍ଚାତ୍ପଦ ନାହିଁ । କାହିଁକି ଆପଣ ତାଙ୍କର ପ୍ରଶଂସା ନକରିବେ ? ଆମେ ସିନା ଆପଣଙ୍କ ଦୃଷ୍ଟିରେ ଚିର ଅବହେଳିତ । ଦୟାର ପାତ୍ର । ମୁଁ ବୁଝି ପାରେ ନାହିଁ ସମାଜରେ ଗଣିକା ଓ କଣ୍ଟ୍ରାକ୍ଟମ୍ୟାରେଜ କରୁଥିବା ମହିଳାମାନଙ୍କ ମଧ୍ୟରେ ପ୍ରଭେଦଟା କେଉଁଠି ? ଛାଡ଼ନ୍ତୁ ସେ କଥା । ଏବେ କହନ୍ତୁ ଆପଣ ମୋତେ ବିବାହ କରିବେ କି ନାହିଁ ? ମୋର ଦୃଢ଼ ବିଶ୍ୱାସ ଆପଣ ମୋତେ ହତାଶ କରିବେ ନାହିଁ ।

ଶ୍ୟାମାକାନ୍ତ ନିର୍ବାକ ଓ ନିସ୍ପନ୍ଦ ଅବସ୍ଥାରେ ତାଙ୍କୁ ଚାହିଁ ରହିଲେ । ଦୀର୍ଘ ରାଜନୈତିକ ଜୀବନରେ ସେ ନ ଠକିଛନ୍ତି କାହାକୁ ? ଘରେ ବାହାରେ, ଆପଣା ପର, ଶତ୍ରୁ ମିତ୍ର, ସମସ୍ତଙ୍କୁ ପ୍ରତାରଣା ଫାଶରେ ଛନ୍ଦି ଦେଇ ପାରିଥିଲେ । କିନ୍ତୁ ଆଜି ହୋଇଛନ୍ତି ପରାସ୍ତ ଏଇ ସାମାନ୍ୟ ଯୁବତୀ ନିକଟରେ । ସୁଚରିତା ଚେତେ ତାଙ୍କ ଠାରୁ ଗୋଟିଏ ନିର୍ଦ୍ଦିଷ୍ଟ ଉତ୍ତର ଚାହେଁ । କି ଭୟଙ୍କର ସତେ ସେ ! ସେ କଣ କୌଣସିମତେ ପଳାଇଯାଇ ପାରିବ ନାହିଁ । ଥିଲେ ଥିଲେ ହଠାତ୍ ବ୍ୟଗ୍ର କଣ୍ଠରେ କହିଲେ ଦେଖ ସୁଚରିତା ନିର୍ବାଚନ ସମୟ । ମରିବାକୁ ଅବସର ନାହିଁ । ନିର୍ବାଚନ ଶେଷ ହେଉ ଯାହା କରିବା । ବର୍ତ୍ତମାନ ମୁଁ ଯାଏ । ବହୁତ ସମୟ ମୁଁ ଏଠି ଅଟକି ଗଲିଣି ।

ସୁଚରିତା ନେତାଙ୍କ ଭାବ ଭଙ୍ଗୀରୁ ସବୁ ବୁଝିଲା । ସବୁ ମିଥ୍ୟା । ସବୁ ପ୍ରତାରଣା । ନେତା ସେ । କଥାର ଯାଦୁ ଜାଣନ୍ତି ।

କଥା କହି ସେ ମନ ହରଣ କରି ପାରନ୍ତି । ଗୋଟିଏ ମୁହୂର୍ତ୍ତରେ ଯାହା କରିବା ପାଇଁ ପଣ କରନ୍ତି ପରମୁହୂର୍ତ୍ତରେ ତାହା ଭୁଲି ଯାଆନ୍ତି । ସତକୁ ମିଛ, ମିଛକୁ ସତ, କଳାକୁ ଧଳା, ଧଳାକୁ କଳା କରିବାରେ ସେ ପ୍ରବୀଣ । ଶ୍ୟାମାକାନ୍ତ ଚାଲିଯିବାକୁ ଉଦ୍ୟତ ହେବା ଦେଖି ସେ ସହାସ୍ୟ ବଦନରେ କହିଲେ, ହେଉ ତେବେ ହେଲା ଆପଣ ଆଜି ଯାଆନ୍ତୁ । ପୁଣି କେବେ ଆସିଲେ ସମସ୍ତ ବିଷୟ ଆଲୋଚନା କରିବା । କିନ୍ତୁ ଗୋଟିଏ କଥା । ଆପଣ ଯେ ଏଠିକୁ ଆସି ମୋତେ ଗୌରବାନ୍ୱିତ କରିଛନ୍ତି ତାର ସନ୍ତକ ସ୍ୱରୂପ ମୋତେ କିଛି ଦେଇ ଯାଆନ୍ତୁ ।

ଶ୍ୟାମାକାନ୍ତ ନର୍ମିଯ୍ୟା ପୁରୁଷଟି ପରି ନିଜ ଦାଢ଼ିରେ ହାତ ବୁଲାଇ ବୁଲାଇ କହିଲେ, ତୁମକୁ ମୁଁ କ'ଣ ଦେଇପାରେ । ମୁଁ ନିଃସ୍ୱ ଦରିଦ୍ର । ମୋର ତୁମକୁ ଦେଲାଭଳି କିଛି ନାହିଁ । ଏମ୍. ପି. ଅଧକ୍ଷ ଅବା ବିମାନଚାଳକଙ୍କ ପରି ତୁମକୁ ଦାମିକା ଉପହାର ଦେବା ମୋର ଶକ୍ତିର ବାହାରେ । ମୁଁ ଜଣେ ଦେଶପ୍ରେମୀ, ତୁମେ ଜାଣ । ସ୍ୱାଧୀନତା ସଂଗ୍ରାମରେ ମୁଁ ମୋର ସର୍ବସ୍ୱ ହରାଇଛି ।

ମୁଁ ଯଥାର୍ଥରେ ହୋଇଛି ସର୍ବହରା । ଆଜି ଭୂଦାନ କର୍ମରେ ମୁଁ ଆତ୍ମନିୟୋଗ କରିଛି । ଯଦି ନେବ ଏଇ ନିଅ କହି ବ୍ୟାଗ୍ ମଧ୍ୟରୁ ସେ ତିନିଖଣ୍ଡି ପୁସ୍ତକ ବାହାର କରି ସୁଚରିତା ହାତକୁ ବଢ଼ାଇ ଦେଲେ । ସେ ଖଣ୍ଡ ଖଣ୍ଡ କରି ସବୁ ଆଡ଼େଇ ନେଲେ । 'ଗୀତା ପ୍ରବଚନ', 'କାନ୍ତିଯାତ୍ରା' 'ଭୂଦାନ କଣ' ? କେଉଁଠା ତାର ମନ ଲାଖି ହୋଇନାହିଁ । ବହି ଫେରସ୍ତ ଦେଇ ଶ୍ୟାମାକାନ୍ତଙ୍କର ଅନିଚ୍ଛାସତ୍ତ୍ୱେ ସେ ଠାଣି ଆଣିଲେ ତାଙ୍କର ଦକ୍ଷିଣ କରକୁ । ପାପୁଲିରେ ଲେଖିଲେ ଏକ ଚୁମ୍ବନ । ମଧ୍ୟମ ଅଙ୍ଗୁଳିରେ ଥିବା

ଅଂଗୁରୀୟଟିକୁ ସେ ଧୀରେ ଧୀରେ କାଢ଼ି ରଖିବା ପାଇଁ ଚେଷ୍ଟା କଲା । ସମସ୍ତ ଅନିଚ୍ଛାସତ୍ତ୍ୱେ ସୁଚରିତା ଅଂଗୁରୀୟଟିକୁ ତାଙ୍କର କାଢ଼ି ନେଲା ।

ଭୂଦାନପ୍ରେମୀ କେତେ ମିନତି କଲେ, ସେ ଅଙ୍ଗୁରୀୟଟିକୁ ଫେରି ପାଇବା ନାହାନ୍ତି । ସେହି ଅଙ୍ଗୁରୀୟଟିକୁ ସ୍ତ୍ରୀ ତାଙ୍କୁ ତାଙ୍କର ବାସର ରାତିରେ ଉପହାର ଦେଇ ଶପଥ କରାଇଛନ୍ତି । ଜୀବନରେ ଥାଉ ଥାଉ ସେ ଅଙ୍ଗୁରୀୟଟିକୁ ଅନ୍ତର କରିବା ଅର୍ଥ ପତ୍ନୀଙ୍କ ପବିତ୍ର ପ୍ରେମର ଅବମାନନା କରିବା । ନଗ୍ନ ଅଙ୍ଗୁଳିଟିକୁ ଦେଖି ସ୍ତ୍ରୀ ତାଙ୍କର ତାଙ୍କୁ କଣ କହିବେ ? ତାଙ୍କର ସ୍ତ୍ରୀଙ୍କ ପାଇଁ ଅନ୍ତତଃ ମୁଦ୍ରିକାଟି ଫେରି ପାଇବା ଉଚିତ ।

ସୁଚରିତା ନିଜକୁ ବିଶ୍ୱାସ କରି ପାରିଲେ ନାହିଁ । ସେ ଦେଶପ୍ରେମୀଙ୍କୁ କେବଳ ଚାହିଁ ରହିଲା । କ୍ଷଣକାଳ ପରେ ପ୍ରଶ୍ନ କଲା, କଣ ଆପଣ ବିବାହିତ ? ଆପଣଙ୍କର କି ସ୍ତ୍ରୀ ଅଛନ୍ତି ? ଏଇଲେ ପରା କହିଲେ ଆପଣ ଆଜୀବନ କୁମାର । ମୁଦ୍ରିକାଟି କେଉଁ ସ୍ତ୍ରୀ ପାଇଁ ନେବେ ? ମୁଁ ଏହାକୁ କୌଣସିପ୍ରକାରେ ଦେଇ ପାରିବି ନାହିଁ । ଏଇ ଦେଖନ୍ତୁ ଯେଉଁ ହାରଟି ପିନ୍ଧିଛି ସେଇଟି ହେଉଛି ଏମ୍. ପି. ମିଶ୍ରଙ୍କ ଦାନ, ଏଇ ଚାହାନ୍ତୁ ଏଇଯେ ଦୁଲ ହଲକ ଲଗାଇଛି ଏ ହେଉଛି ଅଧ୍ୟାପକ ଦାସଙ୍କ ପ୍ରୀତି ଉପହାର । ଆପଣଙ୍କ ଠାରୁ ମୁଁ କିଛି ନ ରଖି ଆପଣଙ୍କୁ ଛାଡ଼ି ଦେଇ ପାରିବି ନାହିଁ । କଣ ଭାବୁଛନ୍ତି, ଏ ସବୁ ମୋର କପୋଳକଳ୍ପିତ । ଅବିଶ୍ୱାସ କରିବାର କୌଣସି କାରଣ ନାହିଁ । ଏଇ ଗୃହକୁ ଏସ୍. ପି. ଆସିଥିଲେ । ବେଲ୍ଟ ଛାଡ଼ି ଯାଇଛନ୍ତି । ଅଧ୍ୟାପକ କୋଟ-ବନ୍ଧ ଛାଡ଼ି ଯାଇଛନ୍ତି । ବ୍ୟବସାୟୀ ନନ୍ଦଲାଲ ନିଜ ଡାଏରୀ ଛାଡ଼ି ଯାଇଛନ୍ତି ।

ଶ୍ୟାମାକାନ୍ତ ଆଉ କିଛି କହି ପାରିଲେ ନାହିଁ । ମୁଖମଣ୍ଡଳ ତାଙ୍କର କ୍ଷଣିକ ପାଇଁ ବିବର୍ଣ୍ଣ ହୋଇ ପଡ଼ିଲା । ସତେ ଅବା କୌଣସି ବ୍ୟକ୍ତି ତାଙ୍କୁ ହତ୍ୟାକରିବା ପାଇଁ ଧମକ ଦେଇଛି । ହାଉ ରଖ କହି ସେ କକ୍ଷ ମଧ୍ୟରୁ ବିଦାୟ ନେଲେ । ସୁଚରିତା ସହାସ୍ୟବଦନରେ ନମସ୍କାର ଜଣାଇ ଜଣାଉ ପ୍ରଶ୍ନ କଲା ପୁଣି କେବେ ଆସିବେ ?

ଶେଷ ପଦଟି ସେ ଶୁଣି ପାରିଛନ୍ତି ନା ନାହିଁ ସେ କେବଳ ଜାଣନ୍ତି । ପଛକୁ ଆଉ ଚାହିଁ ନାହାନ୍ତି । ଏକମୁହାଁ ହୋଇ ସମ୍ମୁଖକୁ ସେ ମାଡ଼ି ଚାଲିଛନ୍ତି । ଜଣ ଜଣ ହୋଇ ସମସ୍ତଙ୍କ ମୁହଁ ନାଚି ଉଠେଚି ତାଙ୍କରି ସମ୍ମୁଖରେ । ଅଧ୍ୟାପକ ଦାସ ଆଦର୍ଶବାଦୀ ଦାର୍ଶନିକ । ନୋଟବହି ଧରି ଆସିଛନ୍ତି ସେଠି । ଏମ୍‌. ପି.ମିଶ୍ର ଧାର୍ମିକ ପୁସ୍ତକଭକ୍ତ ନମନ୍ତେ ଧାନ ଦରିଦ୍ର କନେଷ୍ଟବଲଙ୍କୁ ଖଟାଇବାର ମାନସରେ ଚେଉଁଟା ଅଷ୍ଟ୍ରାହାସ୍ୟ କରିଛନ୍ତି । ଧନ୍ୟରେ ମଣିଷ !!!

ଥାନା ଘଣ୍ଟାରେ ବାଜି ଉଠିଚି ଠନ୍‌...ଠନ୍‌ ହୋଇ ଦୁଇ । ସେ ସଚେତନ ହୋଇ ପଡ଼ିଛନ୍ତି । ରାତି ତେବେ ଅନେକ ହେଲାଣି । ସେ ଚୋରୀଟି ପରି କ୍ଷଣଟିଏ ଥମି ଯାଇ ଆପଣାର ନଗ୍ନ ଅଙ୍ଗୁଳିକୁ ଚାହିଁଲେ । ପବନ ବାସର ରାଜିର ମୁଦ୍ରିକା ଅଜ ହୋଇଛି ଅନ୍ତର୍ହିତ । କିଏ ତାହା ଦେଖିଛି କି ? କିଏ ଶୁଣିଛି କି ? ସୁଚରିତା ତାଙ୍କୁ ଯାହା ସବୁ କହିଲା,ସେ ଚତୁର୍ଦିଗରେ ଥରେ ନିରୀକ୍ଷଣ କଲେ । ନା କେହି ନାହିଁ । ପରିବେଶ ଶାନ୍ତ, ଶୂନ୍‌ଶାନ ଶ୍ମଶାନ ପରାରେ ଗୋଟାଏ ଚଡ଼ା କାନ୍ଦୁଛି, ଦୂରରୁ ଧଣୁଛି ଚକ୍ ଚକ୍ ।

ଆକାଶରେ ଗୃଦ୍ଧ । ମୃତ ରାଜପଥ ପୂର୍ବବତ୍ ଆପଣାର କୃଷ୍ଣ କଳେବରଟିକୁ ଲମ୍ବାଇ ପଡ଼ି ରହିଛି । ରାସ୍ତାର ଉଭୟ

ସୀମାରେ ଶିଶିର ଧୌତ ଦୁର୍ବାଦଳ । ପୂର୍ବବତ୍ ନୀରବ ନିସ୍ତବ୍ଧ । ମୂକ ସ୍ୱରେ ଅବକାଶକୁ ଗୁହାରି ରହିଛି । ଆଜ ଗୁହାରି ରହିଛି ସୁଚରିତା ତାପସ କୁମାରୀ ସନ୍ନ୍ୟାସିନୀ ଶକୁନ୍ତଳାର କାମନା ନେଇ, ଦେଶସେବୀ ଶ୍ୟାମାକାନ୍ତଙ୍କର ଆଗମନର ପଥକୁ ।

---

"ଡଗର"
ପଞ୍ଚବିଂଶ ବର୍ଷ
ଦଶମ ଓ ଏକାଦଶ ସଂଖ୍ୟା




ଟ୍ରେନିଂ କଲେଜ

ହଷ୍ଟେଲ

ତା-୨୮, ଅଗଷ୍ଟ ୭୧

ସ୍ନେହର କାବେରୀ;

ଭଲ ଥିବ। ଆସିଲା ବେଳେ ମୋତେ କହିଥିଲ ଏଠି ପହଞ୍ଚି ତୁମକୁ ଲେଖିବାକୁ। ଏଣୁତେଣୁ ବ୍ୟସ୍ତ ରହି ଲେଖିପାରି ନଥିଲି। ଗତ ସାତଦିନ ହେଲା ଏଠାରେ ଅବିରତ ବର୍ଷା ଚାଲିଛି। ମଝିରେ ମଝିରେ ଘଣ୍ଟେ ଦେଢ଼ ଘଣ୍ଟା ପାଇଁ ଯେ

ବର୍ଷା ବନ୍ଦ ନ ହେଉଛି ସେକଥା ନୁହେଁ । ଏଇ ଘଣ୍ଟେହେଲା ବର୍ଷା ଛାଡ଼ିଛି । ହେଲେ ଛାତରେ ଜମିଥିବା ପାଣି ନଳାବାଟେ ଟୋପେ ଟୋପେ ପଡ଼ୁଛି । ଭଲେ ଗୋଟିଏ ଟିଣ ପଡ଼ିଛି ନା, କଣ । ସେଥିପାଇଁ ଶବ୍ଦ କରୁଛି । ଏଇ ଶବ୍ଦ ଶୁଣି ହଠାତ୍ ଘର କଥା ମୋର ମନେ ପଡ଼ିଲା । ବର୍ଷାପରେ ଘରଚାଳରେ ଏମିତି ଆମ ଘର ପାଣି ଉଦଳେଥିବା କଖାରୁ ପତ୍ର ଉପରେ ପଡ଼େ, ଶବ୍ଦ କରେ । ତାପରେ ଶୋଇ ପଡ଼ିଥାଏ । ମୁଁ ଶେଯରେ ପଡ଼ି ଏଇ ଶବ୍ଦକୁ ଶୁଣେ । ମନ୍ୟ ଯଦି କୌଣସି କାରଣରୁ ଉଠେ ତେବେ ତୁମେ ଉଠ । ପୁଅ ଶୋଇପଡ଼େ । ଆମେ କିଛି ସମୟ ଆମ ଘୋଟ ଦୁନିଆ କଥା କଥାବାର୍ତ୍ତା ହଉ । ବିଲ ବେଉପାରି, ପିଲାଙ୍କ ପାଠପଢ଼ା, ଗାଁ ଯାତ, କୁଣିଆଁ ମଇଳା, ବନ୍ଧୁବାନ୍ଧବ, ମୋ ଘରକେସ······ତମର ଆଉ ପିଲାମାନଙ୍କର ଦେହପା ।

ଘରୁ। ସେପାଖ ଘରୁ ଗୋଟିଏ ପିଲା କାନ୍ଦିବାର ଚିତ୍କାର ଏଇ ଶୁଭୁଛି । ଏଇ ଚିତ୍କାର ଶୁଣି ମୋର ମନ୍ୟ ଓ ତମେ ପାଖରେ ଥିଲାପରି ମନେ ହେଉଛି । ତା ଦେହ ଭଲ ନଥିଲା । ତାକୁ କହିବ. ମନ ଦେଇ ପଢୁଥିବ । ବନ୍ଦ ପାଣିରେ ବେଶି ଗାଧୋଇବ ନାହିଁ । ନୂଆ ପାଣି ଧରିବ ।

ଆମର ଏଠି ପଢ଼ାପଢ଼ି ଆରମ୍ଭ ହୋଇ ଗଲାଣି । ଆମ ଅଧ୍ୟକ୍ଷ ଆସି ତାଙ୍କର ପ୍ରାରମ୍ଭିକ ଭାଷଣ ଦେଲେ— ଆପଣମାନେ ସମସ୍ତେ ଶିକ୍ଷକ, ଶିକ୍ଷା ବିତରଣ କରିବା ହେଲା ଆପଣମାନଙ୍କର ଧର୍ମ । ଆଜି ସମାଜରେ ଶିକ୍ଷକ ଯଥାର୍ଥ ସମ୍ମାନ ପାଉନି, ସେଥିପାଇଁ ଆପଣମାନେ ହତୋତ୍ସାହ କିମ୍ବା କ୍ଷୁବ୍ଧ ହେବା ଅନୁଚିତ । ଏଇ

ଦେଶର ରାଧାନାଥ, ମଧୁସୂଦନ, ଗୋପବନ୍ଧୁ, ଗୋଦାବରୀଶ ସମସ୍ତେ ଥିଲେ ଶିକ୍ଷକ···ମୋର ସେତିକି ବେଳେ ଗୋଟିଏ କଥା ମନେ ପଡୁଥିଲା, ରାଧାନାଥ, ମଧୁସୂଦନଙ୍କ ପରି ବହୁ ଶିକ୍ଷକ ଏ ମାଟି ମାତୃକାର ସେବାକରି ବଣମାଳତୀ ପରି ନେପଥ୍ୟରେ ମଉଳି ପଡ଼ିଛନ୍ତି । ତାଙ୍କପାଇଁ କେହି ତୁଣ୍ଡଖୋଲି ପଦେ କହିନି, ଆଖିରୁ ଟୋପାଏ ଅଶ୍ରୁ ଝରାଇନି । ଆମ ପରି ଡାକ୍ତରୀ ଔଷଧ କିଣି ଖାଇବାର ଶକ୍ତି ନ ଥିବାରୁ ହୋମିଓପାଥି, ଭଲ ଦାମି ଲୁଗା ଖଣ୍ଡେ କିଣି ନପାରି ଗାଁ ତନ୍ତ ବୁଣାରେ ଯେ ସନ୍ତୁଷ୍ଟ ହେଉ ନ ଥିଲେ ଏକଥା ନୁହେଁ । ରାଧାନାଥ ମଧୁସୂଦନ ଆଜି ଯେ ସମ୍ମାନର ଅଧିକାରୀ ତାହା ତାଙ୍କର ଉଚ୍ଚକୋଟିର ରଚନାପାଇଁ··· ଶିକ୍ଷକତା ପାଇଁ କେବେ ନୁହେଁ । ମାଷ୍ଟର ମୃତ୍ୟୁରେ ସ୍କୁଲରେ ତାର ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା ହୁଏ । ତୁମେ ଜାଣ ଆତ୍ମାର ସଦ୍‌ଗତିପାଇଁ ପ୍ରାର୍ଥନା ଲାଗି ଖର୍ଚ୍ଚାନ୍ତ ହେବାକୁ ପଡ଼େ ନା । ସେତିକି ତାର ପ୍ରାପ୍ୟ । ତମକୁ ଟାଇଫଏଡ୍ ହେଲାବେଳେ ଯେଉଁ ଋଣ କରାଯାଇଥିଲା ଏବେମଧ୍ୟ ବାକି ଅଛି । ସେ ବାକି କଥା ମନେ ପଡ଼ିଲେ ରାଧାନାଥ, ମଧୁସୂଦନଙ୍କ ଆଦର୍ଶ ମୋତେ ଉଦ୍‌ବୁଦ୍ଧ କରି ପାରେନି । ଅଧ୍ୟକ୍ଷଙ୍କ ଉଦ୍‌ବୋଧନ ମୋତେ ସ୍ପର୍ଶ କରେନି । ସେ ଯାହାହେଉ, ମୋତେ ଏଠି ଦଶଟି ମାସ କାଟିବାକୁ ପଡ଼ିବ । ଜଣେ ବନ୍ଧୁ କହିଲେ, ଏଠି ଶିକ୍ଷା ଦରବାର କିଛି ନାହିଁ, ଯାହା ଜାଣିଛ ତାର ବିକାଶ ନିମନ୍ତେ ବିତରଣ ନିମନ୍ତେ ମୋତେ ଚେଷ୍ଟା କରିବାକୁ ହେବ ।

ବାଇଶି ବର୍ଷ ତଳର ସ୍ମୃତି । ସେତେବେଳେ ପୁରକ୍ଷା ବିଦ୍ୟାପୀଠ ଆରମ୍ଭ ହୋଇଥାଏ । ଘର ନଥାଏ । ପିଲାମାନେ

ଗଛତଳେ ପଢ଼ନ୍ତି···ଆଜି ବହୁତ ବଦଳି ଯାଇଛି···ସେ ଗଛ ନାହିଁ··· ସେଠି ତିଆ ହୋଇଛି ବିଶାଳ ସୌଧ । ମୁଁ ଅବିବାହିତ ଥିଲି, ଆଜି ପିଲାର ବାପ, ବାଇଶି ବ୍ୟାଚ ପିଲାଙ୍କୁ ପଢ଼ାଇଛି । ସବୁ ବର୍ଷ ଛାତ୍ରମାନେ କୃତିତ୍ୱର ସହ ପାଶ୍ କରି ଯାଇଛନ୍ତି । କିଏ ଆଜି ଡେପୁଟି ହେଲାଣି, କିଏ ମାଷ୍ଟ୍ର ହେଲାଣି । କେତେ କିଏ କଣ ହେଲେଣି । ମୁଁ ଆଜି ବାଇଶି ବର୍ଷ ପରେ ଟ୍ରେନିଂ ନେବାକୁ ଆସିଛି । ପିଲାର ମନ ନେଇ କିପରି ପଢ଼ାଇବାକୁ ହେବ ସେ ବିଷୟରେ ଟ୍ରେନିଂ ନେବ । ଏଠି ଆମେ ବିଭିନ୍ନ ବୟସର ଲୋକ ଜୁଟିଛୁ । ମୋଟେ ଶିକ୍ଷକତା ଅଭିଜ୍ଞତା ନଥିବାଠାରୁ ଧରି ପଚିଶବର୍ଷ ପର୍ଯ୍ୟନ୍ତ ଅଭିଜ୍ଞତା ଥିବା ଲୋକ ଅଛୁ । ସମସ୍ତଙ୍କୁ ଏକା ଟ୍ରେନିଂ । ଯେଉଁ କାରଣରୁ ହେଉନା କାହିଁକି ଯାହା ଅଭିଜ୍ଞତା ଥାଉନା କାହିଁକି ଯେ ଶିକ୍ଷକ ଟ୍ରେନିଂ ନେବା ପାଇଁ ଆସନ୍ତି । ସମସ୍ତେ ସମାନ ବୋଲି ବିଚାର କରାଯାଏ । ତାହାହିଁ ମୋତେ ବିସ୍ମିତ କରେ । ମୁଁ ଟ୍ରେନିଂ ପାଇବା ପୂର୍ବରୁ ଯେଉଁ ବାଇଶି ବ୍ୟାଚ ଛାତ୍ରଙ୍କୁ ପଢ଼ାଇଛି, ତାହା ମୋର ଟ୍ରେନିଂ ପରି ଶିକ୍ଷା ପ୍ରଣାଳୀ ଠାରୁ ନିଶ୍ଚୟ ଭିନ୍ନ । ସେମାନେ ଯେଉଁ କ୍ଷତି ସହିଲେ ସେଥିପାଇଁ ଦାୟୀ କିଏ ? ଶାସ୍ତି ପାଇବ କିଏ ? ଆଜି ମୁଁ ନିଜକୁ ପ୍ରଶ୍ନ କରି ଉତ୍ତର ପାଉନାହିଁ ।

ଆମକୁ ଯେଉଁ ପଣ୍ଡିତେ ପଢ଼ାଉଥିଲେ, ତାଙ୍କ ନମସ୍କାର କଲେ ସେ 'ଆୟୁଷ୍ମନ୍ତ' ହୁଅ ବୋଲି ଆଶୀର୍ବାଦ କରନ୍ତି । ବହୁଦିନ ବାଳିକା ସ୍କୁଲରେ ରହି ଯାଇଥିବାରୁ ତାଙ୍କର ଏପରି ଅଭ୍ୟାସ ହୋଇ ଯାଇଥିଲା । ସେ ଗାଳିଦେଲେ କୁହନ୍ତି ତୁଠପଥର ବଣିଲା, ତାଙ୍କୁ ଥଟ୍ଟା କରୁ କରୁ ମୋର ଅଭ୍ୟାସ ହୋଇଗଲା ।

ମୁଁ ବେଳେ ବେଳେ ପିଲଙ୍କୁ ଗାଳି ଦେଲାବେଳେ ସେଇଆ କହି ଗାଳିଦଏ । ଏହି ଗାଳିରେ ମୋର କୌଣସି ଅନ୍ତରଙ୍ଗ ଘୃଣା ନ ଥାଏ । ତଥାପି ବି ତମେ ମୋ ଉପରେ ବିରକ୍ତ ହୁଅ । କିନ୍ତୁ ଏଠିକା କଥା ଶୁଣିଲେ ତମେ ଆଶ୍ଚର୍ଯ୍ୟ ହେବ । ଏଠି କେତେକ ଅଧ୍ୟାପକ ଯେପରି ତାଙ୍କ ଛାତ୍ରୀମାନଙ୍କ ପ୍ରତି ବ୍ୟବହାର କରନ୍ତି, ତାହା ବାସ୍ତବରେ ଲଜ୍ଜାର କଥା । ଏବେ ଜଣେ ଅଧ୍ୟାପକ ତାଙ୍କର ଆପତ୍ତିଜନକ ବ୍ୟବହାରପାଇଁ ଶାସ୍ତି ସ୍ୱରୂପ ବଦଳି ହେଉଛନ୍ତି, ଜୟପୁର ନା ସେହିପରି ଏକ ଦୂର କଲେଜକୁ । ଶିକ୍ଷାବିଭାଗର ଡିରେକ୍ଟରଙ୍କ ଏ ବିଚାର ବାସ୍ତବରେ ବିସ୍ମୟ ସୃଷ୍ଟି କରେ । ଶିକ୍ଷାକ୍ଷେତ୍ରରେ ଏପରି ଆପତ୍ତିଜନକ ବ୍ୟବହାରପାଇଁ ଏହା କଣ ଉପଯୁକ୍ତ ଶାସ୍ତି ? ମୁ ଭାବି ପାରେନାହିଁ । ଡିରେକ୍ଟର କ'ଣ ଭାବନ୍ତି । ଏହି ସାଧାରଣ ସଜା ବଦଳି ହୋଇଯିବା ଦ୍ୱାରା କଣ ତାଙ୍କ ଚରିତ୍ର ବଦଳି ଯାଇଥିବ ? ଛାଡ଼, ବଡ଼ ବଡ଼ ଅନୁଷ୍ଠାନରେ ବଡ଼ ବଡ଼ କଥା । ଆମପରି ଅଦା ବେପାରୀଙ୍କ ଜାହାଜ ମୂଲାଇ ଲାଭ କ'ଣ ?

ତମେ ଥରେ କହିଥିଲ ତମର ପରି ଜଣେ କିଏ ସମ୍ପର୍କୀୟ ଏଠି କଟକରେ ଟାଉନ ବସ୍ ଚଳାନ୍ତି । ସେ ମୋତେ ଚିହ୍ନନ୍ତି । ବସ୍‌ରେ ମୁଁ କେତେଥର ଗଲଣି । କାହିଁ କେହି ତ ମୋତେ ବସ୍‌ରୁ ଓହ୍ଲାଇଲା ବେଳେ ପଛରୁ ଡାକି ନମସ୍କାର କରନ୍ତି ନାହିଁ । ପୁଣି କେବେ ଦେଖାହେବ ବୋଲି କହନ୍ତି ନାହିଁ । ସେ ଯାହାହେଉ ତୁମେ ଯଦି ତାଙ୍କୁ ଏ ମଧ୍ୟରେ ଲେଖ ତେବେ ଲେଖିବ, ବସ୍ ଟିକେ ଧୀରେ ଧୀରେ ଚଳାଇବାକୁ । କାରଣ ବେଳେ ବେଳେ ସେମାନେ ସବୁ ଗାଡ଼ି ଯେପରି ଚଳାନ୍ତି

ଖସିପଡ଼ି ପୈତୃକ ପ୍ରାଣ ହରାଇବାର ଭୟ ହୁଏ । ଦୁର୍ଭାଗ୍ୟକୁ ମୋର ଯଦି ସେପରି କିଛି 'ହୁଏ···ଆଉ କିଛି ହେଉ ନହେଉ ସରକାରଙ୍କ ପଚାଶଟି ଟଙ୍କା ପାଣିରେ ପଡ଼ିବ । ଧିର୍ଦିନ ନା ପଢ଼ିରେ ବି. ଏ. ଲେଖିବା ପରେ ବି. ଇଡ଼. ଲେଖିବାର ଗୌରବରୁ ବଞ୍ଚିତ ହେବାକୁ ହେବ ।

ଏହି କଲେଜରେ ନାମ ଲେଖାଇବା ପୂର୍ବରୁ ଯେଉଁ ଇଣ୍ଟରଭ୍ୟୁ ହୁଏ ସେଥିରେ ମୋତେ ପଚରା ଯାଇଥିଲା ··ପାଠପଢ଼ା ବ୍ୟତୀତ ମୋତେ ଆଉ କଣ ଆସେ । କଣ କହିବି କଣ କହିବି ହୋଇ ଶେଷରେ କହିଲି, ମୋତେ ଡ୍ରାମା କରି ଆସେ । କାରଣ ଏହି ଅନୁଷ୍ଠାନରେ ବହୁତ ଡ୍ରାମା ହୁଏ । ଡ୍ରାମା କରି ଅଧ୍ୟାପକ-ମାନଙ୍କ ଦୃଷ୍ଟି ଆକର୍ଷଣ କରିପାରିବା ମୋ ପକ୍ଷେ ସହଜ ମନେହେଲା । ପିଲାଦିନେ ସୀତା ବିବାହରେ ଜନକ ହୋଇ ବାହାରିଥିଲି ।···ମୋର ପରି ଆମ କୃଷ୍ଣର ପୁଅ ମଧ୍ୟ ଡ୍ରାମା କରି ଜାଣେ ବୋଲି କହିଲା । ଭାରି ଚାଲାକ ପିଲା । ସେ ପହିଲି ରଜରେ ତିନିଥର ଧ୍ରୁବ ହୋଇ ପାର୍ଟ କରିଛି···ସେ କଥା କହିଲେ ପାଟିରେ ବାଟୁଲି ବାଜେନି । ତାକୁ ଗୁରୁଁ ଲେ ମୁଁ କଣ ହୋଇପାରିବି ଭାବି ପାରେନା । ପୁଣି ଯଦି ସୀତା ବିବାହ ହୁଏ···ମୁଁ ବୋଧହୁଏ ଜନକ ପାର୍ଟ କରି ପାରିବି ନାହିଁ । କୌଣସି ପ୍ରକାରେ କାମ ଚଳାଇନେବି । ମୃତ ସୈନିକ ହୋଇ କୌଣସି ମତେ ଡ୍ରାମା କରେ ବୋଲି ପ୍ରମାଣ କରାଇ ଦେବି । ତମ ମତ କଣ ? ମୃତ ସୈନିକ ହେବି ନା ନେପଥ୍ୟ କୋଳାହଳ କରିବି । ଯାହା କହିବ । ମୋ ପାଟିରୁ ମୋ ମନ କଥା ଶୁଣିଲେ ତମେ ରାଗ ! ସେଥିପାଇଁ ଘରୁ ପଠାଇଲି । କିଛି ଭାବିବ ନାହିଁ । ଯାହା ଭଲ

ଲିଖିବ ଲେଖିବ । କିନ୍ତୁ ମନେରଖ ନେପଥ୍ୟ କୋଲାହଳ କରିବା ଅପେକ୍ଷା 'ମୃତ୍ୟୁଞ୍ଜସୈନିକ'ରେ ପରିଶ୍ରମ କଲୁ ନାହିଁ କହିଲେ ଚଳେ । ସେଥିପାଇଁ ମୁଁ ମୃତ ସୈନିକ ହେବାପାଇଁ ପସନ୍ଦ କରୁଛି ।

ଆମର ଏଠି ଅନେକ ମହିଳା ମଧ୍ୟ ଅଧ୍ୟୟନ କରନ୍ତି । ତମେ ଯଦି ପଢ଼ିଥାନ୍ତ, ତାହାହେଲେ ତମେ ବି ତାଙ୍କପରି ୧୦ ନଂ ପାଇ ଆସିଥାନ୍ତ । କିନ୍ତୁ ପାଠ ନା ଧରିଲେତ ତୁମ ମୁଣ୍ଡବଥା ଆରମ୍ଭ ହୋଇଯାଏ । ଛାଡ଼ ସେକଥା । ଆଉ ଅଧିକ ଲେଖୁନି । ମୋତେ ସବୁ ଲେଖିବ । କାଳଗାଈର ନୂଆ ବାଛୁରୀଟି କେମିତି ଅଛି ? ବାରିପଟ କାବୁଲି କଦଳୀ ଗଛରେ ଯେଉଁ କାନ୍ଦି ପଡ଼ିଛି ସେଥିରେ କେତେ ପେଣା କଦଳୀ ଫଳିଛି ? ନୋକାକୁ କହି ଆସିଥିଲି ଘରେ ଆସି ଘରଟି ଶୋଇବାକୁ । ଆସୁଛି ତ ? ତୁମ ପାଇଁ ଅଳବର ଖାଁ ଗୁଡ଼ାଖୁ କିଣା ହୋଇ ରଖାଯାଇଛି । ସୁବିଧା ଦେଖି ପଠାଇ ଦେବି ।

ଏଇ ଆସିଲା···ପୁଣି ଆଉ ଅସରାଏ ବର୍ଷା । ପବନ ଯୋରରେ ପିଟୁଛି । ସମସ୍ତେ ଶୋଇ ସାରିଲେଣି । ମୁ ଝରକା ବନ୍ଦ କରି ଶୋଇବି । ମକୁକୁ ମୋର ସ୍ନେହ ଦେବ । ଇତି ।

ମୁଁ—

---

ରବିବାର "କଳିଙ୍ଗ"

ତା ୨୨ ମାର୍ଚ୍ଚ ୭୨




ଠିକ୍ ଦଶବର୍ଷ ତଳର କଥା । ବେଳାଭୂମିରେ ବୀଚିମାଳା ଅଭିମାନରେ ଶିର ପିଟୁଥିଲେ । ପୂର୍ବ ଆକାଶ ଉଦୟନର ବିଜୟ ଉତ୍ସବରେ ହୋଇ ଉଠୁଥିଲା କନକବରଣ । ତୁମେ ଚାହିଁ ରହିଥିଲ ନିର୍ନିମେଷ ନୟନରେ । କେଇଜଣ ନାଉରି ଗୋଟିଏ ଷ୍ଟେଟ ଡଙ୍ଗାରେ ଲମ୍ବାପଥର ଭର୍ତ୍ତି କରୁଥିଲେ । ମାଛ ଧରିବା ଡଙ୍ଗାଟିକୁ କୂଳକୁ ଆଣିବା ପାଇଁ ଆଉ କେତେକ ନାଉରି ଚଳାଇଥିଲେ ଅକ୍ଳାନ୍ତ ଚେଷ୍ଟା । ତୁମେ ତାହା ଲକ୍ଷ୍ୟ କରୁଥିଲ । ଟିକିଏ ଦୂରରେ ମହାନଦୀର ଅପର ପାର୍ଶ୍ୱରେ ଥିଲା ଘନ ଜଙ୍ଗଲ । ତୁମର କିଛି ମନେ ପଡ଼ୁଛି ରଞ୍ଜିତା ?

'ନା' ।

'ଠିକ୍ ଏଇ ସ୍ଥାନ । ସେଦିନ ତୁମେ ଏହିଠାରେ ଠିଆ ହୋଇଥିଲ । ଏ ହେଲା କଷ୍ଟମ ଅଫିସ । ଏହାର ମେନ୍‌ଗେଟ୍ ନିକଟରେ ଅଛି ସେହି ଫଳକ । ଆମର ପ୍ରିୟ ପ୍ରଧାନମନ୍ତ୍ରୀ ନେହେରୁ ସେଦିନ ବୈଦିକ ରୀତିରେ ନଡ଼ିଆ ଭାଙ୍ଗି ଏହି ପାରାଦ୍ୱୀପ ବନ୍ଦରରେ ଭିତ୍ତି ସ୍ଥାପନ କରିଥିଲେ । ସେଦିନର ମୂକସାକ୍ଷୀ ସ୍ୱରୂପ ଆଜି କେବଳ ରହିଛି ଏହି ଫଳକଟି । ସ୍ମରଣ କରି ପାରୁଛ ? ମୋର ସ୍ପଷ୍ଟ ମନେ ଅଛି ନେହେରୁଜୀ ନଡ଼ିଆଟି ଭାଙ୍ଗୁଥିଲା ବେଳେ ଏକାଧିକ କୁଆଁରୀକଣ୍ଠରେ ଗଗନ ପବନ ମୁଖରିତ କରି ସ୍ୱର ଶୁଭୁଥିଲା । ଦୂର ଅତୀତରେ ଉତ୍କଳୀୟ ନୌବାଣିଜ୍ୟର ଗୌରବମୟ କାହାଣୀ ବର୍ଣ୍ଣନା କରିଥିବା କବି ସମ୍ରାଟଙ୍କର ସେହି ରଚନା—'ବହିତ୍ର ଲାଗିଲା ଯାଇ ସିଂହଳ ଦ୍ୱୀପରେ' । ଉପସ୍ଥିତ ମୁଷ୍ଟିମେୟ ଜନତାପ୍ରାଣରେ ଏହି ବନ୍ଦରର ଭବିଷ୍ୟତ ନେଇ ଶତପ୍ରଶ୍ନ ଉଙ୍କି ମାରୁଥିଲା ।

ଏହି ବିରାଟ ଡକ୍ ଓ ଏହି ବନ୍ଦରକୁ କେନ୍ଦ୍ରକରି ଆଜି ଯେଉଁ ନୂତନ ଶିଳ୍ପ ନଗରୀ ଧୀରେ ଧୀରେ ମୁଣ୍ଡଟେକି ଉଠୁଛି, ଏସବୁ ଦେଖି ଭବିଷ୍ୟତ ବଂଶଧର କେବେ ବୁଝି ପାରିବେନାହିଁ ଯେ ଦିନେ ଏହି ବିରାଟ ବେଳାଭୂମି ଶୂନ୍‌ଶାନ ଅବସ୍ଥାରେ ଅଯତ୍ନରେ ପଡ଼ି ରହିଥିଲା । ଘଞ୍ଚ ବନାମାରର ସ୍ନିଗ୍ଧ ଶୀତଳ ଛାୟାତଳେ କ୍ଲାନ୍ତ ବାଲିହରିଣ ଆସି ବିଶ୍ରାମ କରୁଥିଲା । ଛୋଟ ଗୁଣ୍ଡୁଚିମୂଷାଟି ତାର ବସା ବାନ୍ଧୁଥିଲା । ଦରିଦ୍ର ନାବିକ ମାଛ କେଇଟା ପାଇଁ ଛୋଟ ଡଙ୍ଗାଟିକୁ ସମୁଦ୍ର ମଧ୍ୟକୁ ମେଲି ଦେଉଥିଲା । ତା'ର କନ୍ୟା ଓ ସ୍ତ୍ରୀ ବେଳାଭୂମିରୁ ସାମୁକା ସଂଗ୍ରହ କରି ସାମାନ୍ୟ ରୋଜଗାର କରୁଥିଲେ । ଆଜି ଅକି ସ୍ୱପ୍ନରେ ରଙ୍ଗ ଲାଗିଛି ।

ସାଇରନ୍ ବାଜି ଉଠିଲା । ଇଣ୍ଡୋନେସିଆ ଅଭିମୁଖେ ଛାଡ଼ିବ 'ବିକ୍ରାନ୍ତ'। ରଞ୍ଜିତ ଗୃହିଁଲା । ଜାହାଜରେ ଯାଉଥିବା ଯାତ୍ରୀମାନଙ୍କଠାରୁ ସେମାନଙ୍କର ପ୍ରିୟଜନ ବିଦାୟ ନେଉଛନ୍ତି । ରାସ୍ତାରେ ଦୁଇଟି ନୂଆ ବନ୍ଦରରେ ଜାହାଜ ଅଟକୁଥିବାରୁ ଆଜିକାଲି ପନ୍ଦର ଦିନରେ ପହଞ୍ଚୁଥିବା ଜାହାଜକୁ ଏଠାକୁ ଆସିବାକୁ ପଚିଶ ଦିନ ଲାଗୁଛି ।

ଶ୍ରୁତିକାନ୍ତ ରଂଜିତାକୁ କହିଲା, 'ବିକ୍ରାନ୍ତ'କୁ ଲାଗି ଏହି ଯେଉଁ ଜାହାଜ ଦେଖୁଛ, ତାହାର ନାମ ହେଲା 'କୋଣାର୍କ'। ଏଥିରେ ଜାପାନକୁ ଲୁହା ପଥର ଯାଏ । ସୁକିନ୍ଦାର ଘଞ୍ଚ ବଣ ଜଙ୍ଗଲ, ଯେଉଁଠି ଦିନରେ ମହାବଳ ବାଘ ମୋଡ଼ୁଥିଲା, ଶୋଇ ଅଳସ ଭାଙ୍ଗୁଥିଲା, ହାଇ ମାରୁଥିଲା, ଝାଞ୍ଜି ପିଟୁଥିଲା, ପକ୍ଷୀଙ୍କୁ ଉପହାସ କରୁଥିଲା ସେହି ସ୍ଥାନରୁ ସେହି ପାହାଡ଼ର ବୁକୁ ଚିରି ଆଜି ହଜାର ହଜାର ଟନ୍ ଲୁହା ପଥର ଆସୁଛି । ଶିଳ୍ପ ଅଞ୍ଚଳରେ ଦେଖିଲ ତ କିପରି ପାହାଡ଼ ପରି ଲୁହାପଥର ଜମା ହୋଇଛି ! ଏହି ଜାହାଜ ସେହି ଲୁହା ପଥରକୁ ଦୂର ଦେଶକୁ ବୋହିନିଏ ।

ସାମାନ୍ୟ ଦୂରକୁ ହାତ ବଢ଼ାଇ ଆଉ ଗୋଟିଏ ଛୋଟ ଜାହାଜ ଦେଖାଇ ଶ୍ରୁତିକାନ୍ତ କହିଲା, ଏ ଜାହାଜଟି ହେଉଛି ଆମ ଓଡ଼ିଶା ସରକାରଙ୍କର । ଏହାର ନାମ ବେଗୁନ । ବିଦେଶକୁ ଏଥିରେ ଓଡ଼ିଶାରୁ ଚାଲକା ଚାଉଳ ପଠାଯାଇଥାଏ ଓ ବିଭିନ୍ନ ସ୍ଥାନରୁ ରେଲ ସିଲିପର ପାଇଁ କାଠ ନେଇ ଆସେ ।

ହୀରାକୁଦ ଯୋଗୁ ସମ୍ବଲପୁର ଅଞ୍ଚଳରେ ଯେ ଦୋହରା ଧାନ ଫସଲ ହୁଏ, ତାହା ପଡ଼ୋଶୀ ବଙ୍ଗ ଓ ମଧ୍ୟପ୍ରଦେଶର ଚାହିଦା ପୂରଣ କରିସାରିଲା ପରେ ମଧ୍ୟ ଯଥେଷ୍ଟ ବଳେ । ସେସବୁ

ଯାଏ ବିଦେଶ । ହୀରାକୁଦ ଓଡ଼ିଶାକୁ କେବଳ ବିଜୁଳି ଶକ୍ତି ଯୋଗାଇ ଦେବାରେ ସାହାଯ୍ୟ କରେ ନାହିଁ, ଏହା କୋଟି ମନର ଗ୍ଲାନି ସଫା କରିବା ସଙ୍ଗେ ସଙ୍ଗେ ଦେଶ ବିଦେଶର ବନ୍ଧୁ ଅପରିଚିତ ଭାଇ ଭଉଣୀମାନଙ୍କୁ ତାହା ଦେଖାଇଥାଏ । ପରଦେଶୀକୁ ଆପଣାର କରେ । ଏ ହୀରାକୁଦ ନ ହୋଇ, ସେଥିପାଇଁ କେତେ ଆନ୍ଦୋଳନ ହୋଇ ନ ଥିଲା ସତେ ! ଭବିଷ୍ୟତରେ ଐତିହାସିକ ଏହା ଜାଣି ନିଶ୍ଚୟ ବିସ୍ମୟ ପ୍ରକାଶ କରିବ ।

'ମହିରା' ପରେ ଥିବା ବିଭିନ୍ନ ଜାହାଜଗୁଡ଼ିକୁ ଗୋଟିକ ପରେ ଗୋଟିଏ ଚିହ୍ନାଇ ଦେଲେ ରଞ୍ଜିତାକୁ ଶ୍ରୀକାନ୍ତ । ସିଂହଳ, ଜାପାନ, ଜର୍ମାନ, ଇଟାଲି ପ୍ରଭୃତି ବିଭିନ୍ନ ଦେଶକୁ ଯିବାପାଇଁ ଅବା ସେଠାରୁ ଆସି ବନ୍ଦରରେ ବିଶ୍ରାମ ନେଉଛି । କେଉଁଥିରେ ରପ୍ତାନି ନିମନ୍ତେ ରାଉରକେଲାର ଲୁହା, ବ୍ରଜରାଜ-ନଗରରୁ କାଗଜ, ରାଜଗାଙ୍ଗପୁରର ସିମେଣ୍ଟ, କଟକ ଦ୍ୱାରର ଲୁଗା, କଟକର ରେଫ୍ରିଜରେଟର ଓ ଅନ୍ୟାନ୍ୟ ଲୌହନିର୍ମିତ ଜିନିଷ ଲଦା ହୋଇଛି ।

ହଠାତ୍ 'ଲାଇଟ୍ ହାଉସ'ରେ ଆଲୋକ ଜଳି ଉଠିଲା । ଜାହାଜକୁ ପଥ ପ୍ରଦର୍ଶନ କରିବା ନିମନ୍ତେ ଏହି ଆଲୋକ ଜଳେ । ସନ୍ଧ୍ୟାର ଆଗମନ ସଙ୍ଗେ ସଙ୍ଗେ ଡକ୍‌ୟାର୍ଡ଼ ଭିତରେ ଓ ରାସ୍ତାରେ ରଙ୍ଗବେରଙ୍ଗର ବିଜୁଳିବତୀଗୁଡ଼ିକ ଜଳି ଉଠିଲା । ଡକ୍ ଭିତରେ ଦିଆଯାଇଥିବା ନିଅନ୍ ଆଲୋକଗୁଡ଼ିକ ଜଳି ଉଠିବା ସଙ୍ଗେ ସଙ୍ଗେ ରଞ୍ଜିତା କହିଲା, ମୋତେ ଲାଗୁଛି ସତେ ଯେପରି ମୁଁ ବମ୍ବେ ନଗରୀରେ ଅଛି ।

'ବମ୍ବେ ନଗରୀ ପରି ମଧ୍ୟ ଏହି ପାରଦ୍ୱୀପ ନଗରୀଟି ବି ଶୀଘ୍ର ହୋଇଯିବ । ଦଶଟି ବର୍ଷ ମଧ୍ୟରେ ଏହି ଜନହୀନ ଭୂମି ଉପରେ ହସି ଉଠିଛି ଦେଖୁଛ ତ । ଏହାର ବିକାଶ ନିମନ୍ତେ ବିରାଟ ଭବିଷ୍ୟତ ପଡ଼ିଛି । ଦେଖିଲ ତ ନୂତନ ପ୍ରେକ୍ଷାଳୟ । ବମ୍ବେର ଠିକ୍ ରେଡ଼ିଓ ସିନେମା ଗୃହ ପରି ହୋଇଛି ।

ନୌ-ବିଭାଗରେ ଯେଉଁଭଳି ଯୁବକମାନଙ୍କୁ ତାଲିମ ଦିଆଯାଉଛି ତାହା ବାସ୍ତବରେ ଚମତ୍କାର ହୋଇଛି । ଡେରାଡ୍ୟୁନ ମିଲିଟାରୀ ଟ୍ରେନିଂ କଲେଜର ପରିବେଶ ପରି ମୋତେ ସେଠି ମନେ ହେଲା । ଚମଡ଼ା କାରଖାନା, ସୂତାକଲ, ବିଜ୍ଞାନଗୃହ ଯେତେସବୁ କାରଖାନା ଦେଖିଲେ ସବୁଗୁଡ଼ିକ ଆଧୁନିକ ଧରଣର ହୋଇଛି ।

ନେହରୁନଗର ଅଞ୍ଚଳରେ ଯେଉଁଠାରେ ବିଦେଶୀମାନଙ୍କର ଅଫିସଗୁଡ଼ିକ ନିର୍ମିତ ହୋଇଛି, ସେ ସବୁ ଦେଖିଲେ ଗୋଟାଏ ମୁହୂର୍ତ୍ତରେ କେଉଁ ଦେଶରେ କିପରି ନକ୍ସାରେ ଘର ତୋଳାଯାଏ ସ୍ପଷ୍ଟ ଜାଣି ହୁଏ ।

ବିଭିନ୍ନ ଦେଶବାସୀ ଯେପରି କ୍ରୀଡ଼ାକୌତୁକ କରି ପାରନ୍ତି, ସେଥିପାଇଁ ଯଥେଷ୍ଟ ସୁବିଧା ରହିଛି । ଆମେ ଯିବାବେଳକୁ ଜର୍ମାନୀ କ୍ଲବ ବନ୍ଦ ହୋଇଗଲାଣି ନଚେତ ଆମେ ଯାଇ ବୁଲିଆସିଥାନ୍ତେ ।

ଶ୍ରୁତିକାନ୍ତ ଘଣ୍ଟାକୁ ଚାହିଁ କହିଲା, ହଁ ଆଜି ଦୁଇଘଣ୍ଟା ଡେରିଅଛି । ରଞ୍ଜିତା ପଚାରିଲା, କ'ଣ ସମୟ ବଦଳିଛି କି ?

ନା ସମୟ ବଦଳି ନାହିଁ, ଅଜ ବାଟରେ ଝଡ଼ ହେବା ଫଳରେ ଜାହାଜ ରହି ରହି ଆସୁଛି !

ରଜନୀ ବିଦେଶୀରୁ ଫେରୁଛନ୍ତି । ଶ୍ରୀକାନ୍ତର ବନ୍ଧୁ । ତାଙ୍କୁ ଘରକୁ ନେବା ପାଇଁ ଏଥିରେ ଆସିଛନ୍ତି ବନ୍ଦରକୁ । ଦୀର୍ଘଦିନ ବିଦେଶରେ କଟାଇ ଫେରୁଛନ୍ତି ରଜନୀ । ଶ୍ରୀକାନ୍ତ କହିଲା ରଜନୀ ଓହ୍ଲାଇ ଏସବୁ ଦେଖି ନିଶ୍ଚୟ ପ୍ରଥମେ ବିସ୍ମିତ ହେବ ।

'କାହିଁକି' ?

ଏହି ବନ୍ଦର ଓ ଏହାର ଚତୁଃପାର୍ଶ୍ୱରେ ଆଜି ଯେ ଏପରି ଏକ ସମୃଦ୍ଧିଶାଳୀ ଶିଳ୍ପ ନଗର ଗଢି ଉଠିଥିବ ସେ କଳ୍ପନା କରିପାରି ନ ଥିବ । କିଛି ହୋଇଛି ବୋଲି ଯଦିଓ ସେ ଭାବିଥିବ, ଏ ଧରଣର ନୁହେଁ, ଏ ଆକାରର ନୁହେଁ । କାରଣ ଏହି କଥା ନେଇ ତାର ମୋର ଗୋଳମାଳ ହୋଇଥିଲା । ସେ ଯୁକ୍ତି କରିଥିଲା; ଦଶବର୍ଷ ମଧ୍ୟରେ କିଛି ହୋଇପାରିବ ନାହିଁ । ଏପରି ଯୋଜନା ସ୍ୱପ୍ନବାଦୀର ସ୍ୱପ୍ନବ୍ୟତୀତ ଅନ୍ୟ କିଛି ନୁହେଁ । ମୁଁ ବିରକ୍ତ ହୋଇ ଉତ୍ତର କରିଥିଲି, "ବୁଝିଲୁ ରଜନୀ ! ଆଜି ଯେତେ ବିଶିଷ୍ଟ ବ୍ୟକ୍ତିଙ୍କୁ ତୁ ଦେଖୁଛୁ ଓ ଯେଉଁମାନଙ୍କ କଥା ଶୁଣୁଛୁ, ସେମାନେ ସମସ୍ତେ ପ୍ରଥମେ ସ୍ୱପ୍ନ ଦେଖିଥିଲେ । ଦୁନିଆକୁ ଅଧିକ ସୁନ୍ଦର ଓ ରୁଚିର କରିବା ପାଇଁ, ତାଙ୍କର ସ୍ୱପ୍ନକୁ ସେମାନେ ରୂପ ଦେବା ପାଇଁ ଆପ୍ରାଣ ଚେଷ୍ଟା କରିଥାନ୍ତି । ତାହାହିଁ ସେମାନଙ୍କର ଗୌରବ । ସ୍ୱପ୍ନ ନ ଦେଖିବା ସ୍ୱପ୍ନକୁ କାମରେ ପରିଣତ ନ କରିବା ଓ ନୂତନ କାମପାଇଁ ବଳିଷ୍ଠ ପଦକ୍ଷେପ ନ ନେବାକୁ ମୁଁ ଅନ୍ୟାୟ ତଥା ପାପ ବୋଲି ମନେକରେ । ବ୍ୟକ୍ତିଗତ ଭାବେ ମୁଁ ସ୍ୱପ୍ନବାଦୀ ନ ହେଲେ ମଧ୍ୟ ଯେଉଁମାନେ ସ୍ୱପ୍ନ ଦେଖନ୍ତି, ମୁଁ ସେମାନଙ୍କୁ ସର୍ବଦା ସ୍ୱାଗତ କରେ, ସମ୍ମାନ କରେ । ସେଦିନ ରଜନୀ ବିରୋଧୀ ଦଳର କାଗଜପତ୍ରି ବିଶେଷ ପ୍ରଭାବିତ ହୋଇ ପଡିଥିଲା ।

ତଥା ମଝିରେ ରଞ୍ଜିତା କହିଲା, ଚାଲ ଟିକେ କେଉଁଠି ବସିବା । ଜାହାଜ ଆସିବା ପାଇଁ ଅନେକ ଡେରି ଅଛି । ମୋତେ କ୍ଲାନ୍ତ ଲାଗିଲାଣି ।

ପୁଣି ସାଇରନ ବାଜି ଉଠିଲା । ଶୁଭକାନ୍ତ କହିଲା, ଚାଲ ତେବେ ମଧୁସୂଦନ ପାର୍କକୁ । ଏଇତ କୋଣାର୍କ ଛାଡ଼ିଲା । ତାପରେ ଛାଡ଼ିବ 'ଉଦୟନ' ଓ ଉଦୟନ ପରେ 'ପୁଷ୍ପଗିରି' । ପୁଷ୍ପଗିରି ଛାଡ଼ିବାର ଘଣ୍ଟାକ ପରେ ରଜନୀର ଜାହାଜ ଆସି ଲାଗିବ ବନ୍ଦରରେ ।

ରଞ୍ଜିତା ପାଦ ବଢ଼ାଇଥିଲେ ଆଗକୁ ଆଉ ଆଗକୁ··· ।

---

"କଳିଙ୍ଗ"

ତା ୨୭ ଜାନୁୟାରୀ ୭୨



# ଧୈର୍ଯ୍ୟର ସୀମା

ଶେଷରେ ସହରର ଶେଷ ପ୍ରାନ୍ତରେ ସୁକୁମାରଙ୍କୁ ରହିବା ପାଇଁ ଘରଟି ମିଳିଲା । ଏହା ନିଶ୍ଚିନ୍ତ କଥା ଯେ ଏହି ଘର ଲାଗି ଭଡ଼ା ଦେବାକୁ ତାଙ୍କର ଯଥେଷ୍ଟ ଶକ୍ତି ନଥିଲା । ସ୍ୱଳ୍ପ ବେତନଭୋଗୀ ସେ । ଏହି ମୂଲ୍ୟବାନ ଘରେ ସେ କିପରି ରହି ପାରିଲେ ତାହା ତାଙ୍କୁ ଜାଣିଥିବା ବହୁ ବ୍ୟକ୍ତିଙ୍କର କୌତୂହଳ

ସୃଷ୍ଟି କରୁଥିଲା । ଏହି ଅଞ୍ଚଳଟି ଯଥାର୍ଥରେ ଧନୀ, ବ୍ୟବସାୟୀ, ଉଚ୍ଚ ପଦମାପ୍ରାପ୍ତ ସରକାରୀ କର୍ମଚାରୀମାନଙ୍କର ଏକ ଦୁର୍ଗ କହିଲେ ଅତ୍ୟୁକ୍ତି ହେବନାହିଁ । ଏଠାରେ ପ୍ରତ୍ୟେକ ପ୍ରତ୍ୟେକଙ୍କ କାମରେ ବ୍ୟସ୍ତ ଥାଆନ୍ତି । ଏ ଅଞ୍ଚଳରେ ସୌହାର୍ଦ୍ଦ୍ୟ, ବନ୍ଧୁତ୍ୱ ଇତ୍ୟାଦିର ଉତ୍କଟ ଦାରିଦ୍ର୍ୟ ପରିଲକ୍ଷିତ ହେଲେହେଁ ସାଜସଜା ସୋ ପାର୍ଟି ଇତ୍ୟାଦିର ଅଭାବ ନଥାଏ । ସୁକୁମାରଙ୍କୁ କିନ୍ତୁ ଏସବୁ ଭଲ-ଲାଗୁ ନଥିଲା । କାରଣ ପ୍ରକୃତିତଃ ତାଙ୍କୁ ବାହାର ଚାକ୍‌ଚକ୍ୟ, ସୋ ଇତ୍ୟାଦି ହୃଦୟଶୂନ୍ୟ କଥା ସ୍ପର୍ଶ କରେ ନାହିଁ । ତା ବ୍ୟତୀତ ତାଙ୍କ ପଡ଼ୋଶୀମାନଙ୍କ ସଙ୍ଗେ ପାଦ ପକାଇ ତାଳ ଦେବାପାଇଁ ଦାରିଦ୍ର୍ୟ ତାଙ୍କୁ ପଦେ ପଦେ ବାରଣ କରୁଥିଲା ।

ଏହିସବୁ କାରଣରୁ ସେ ଯେ ଏକାନ୍ତ ନିଃସ୍ୱ ଜୀବନ ଯାପନ କରୁଥିଲେ କହିବା ଅର୍ଥ ସତ୍ୟର ଅପଳାପ କରିବା, ତାଙ୍କ ଶ୍ରେଷ୍ଠ ସଂସାରଟି ନେଇ ସେ ସର୍ବଦା ବ୍ୟସ୍ତ । ସ୍ତ୍ରୀ ତାଙ୍କର ଚିରରୋଗୀ । ତେଣୁ ଅଧିକାଂଶ ସମୟ ସ୍ତ୍ରୀଙ୍କ ସ୍ୱାସ୍ଥ୍ୟ ନେଇ ତାଙ୍କୁ ବ୍ୟସ୍ତ ରହିବାକୁ ପଡ଼ୁଥିଲା । ସମସ୍ତ କାମ ପରେ ଯେଉଁ ସାମାନ୍ୟ ଅବସର ମିଳେ ସେଥିରେ ସେ ଲେଖିବସନ୍ତି କାବ୍ୟ କବିତା । ଆଜୀବନ କଳା-ପ୍ରେମୀ ସେ । ସୁନ୍ଦରର ପୂଜାରୀ, ନିରଳସ ଜୀବନର ବାର୍ତ୍ତାବହ ।

ଦାରିଦ୍ର୍ୟର ଭୟଙ୍କର ଜ୍ୱଳନ ମଧ୍ୟରେ ସୁକୁମାରଙ୍କ ପ୍ରତିଭାର ସମାଧି ହେବା ପୂର୍ବରୁ ସେ ପାଆନ୍ତି ଗୋଟିଏ ନୂତନ କର୍ମ । ନୂତନ ଭାବେ 'ମୈଥିଳୀ' ଦୈନିକ ସଂପାଦନାମଣ୍ଡଳୀର ମୁଖ୍ୟ ସମ୍ପାଦକରୂପେ । ଜଣେ ରାଜନୈତିକ ନେତା କାଗଜଟି ପ୍ରକାଶ କଲେ ଓ ସେଥିରେ ସୁକୁମାରଙ୍କୁ କାର୍ଯ୍ୟ ଯୋଗାଇ ଦେଲେ ତାଙ୍କ ନିକଟରେ ସୁକୁମାରଙ୍କ ପରିଚିତମାନେ କୃତଜ୍ଞତା ଜ୍ଞାପନ କଲେ ।

କହିଲେ ଯାହି ହେଉ ସାହିତ୍ୟିକ ସୁକୁମାର ଶେଷରେ ଆସିଲେ ସଂପାଦନାକୁ । ଯୋଗ୍ୟ ପ୍ରତିଭାର ପ୍ରକାଶ ଖାଇଁ ଉପଯୁକ୍ତ କ୍ଷେତ୍ର ମିଳିଲା । ଦାରିଦ୍ର୍ୟର ଉତ୍କଟ ଦଂଶନରେ ସେ ଏତେ ମ୍ରିୟମାଣ ହୋଇ ପଡ଼ିଥିଲେ ଯେ ତାଙ୍କର ଉଜ୍ଜ୍ୱଳ ପ୍ରତିଭାର ଯେ ଏ ଯଥେଷ୍ଟ ପୁରସ୍କାର ନୁହେଁ ତାହା ସମସ୍ତେ ଭୁଲି ଯାଇଥିଲେ । କିନ୍ତୁ କାଗଜର ମାଲିକଙ୍କ ରାଜନୈତିକ ବିଚାର ବୁଦ୍ଧି ଅତି ତୀବ୍ର । ସେ ବୁଝିଥିଲେ ଏହି କାଗଜ ଓ ସୁକୁମାରଙ୍କ ପ୍ରଭାବରେ ସେ ଶିକ୍ଷିତ ସମାଜକୁ ନିଜର ଅଧିକ ନିକଟକୁ ଟାଣି ଆଣିପାରିବେ । ସେ ଦୃଷ୍ଟିରୁ ହିସାବ କଲେ ତାଙ୍କର ଯେଉଁ ବିରାଟ ସ୍ୱାର୍ଥ ହାସଲ ହୋଇ ପାରିବ ତାହା ତୁଳନାରେ ସୁକୁମାରଙ୍କ ପାରିଶ୍ରମିକ ଅତି ନଗଣ୍ୟ ।

ଅଢ଼ି ନଭେମ୍ବର ଷଟେବ ମୈଥିଳୀର ଉଦ୍‌ଘାଟନ ଉତ୍ସବ ସାଙ୍ଗ ହୋଇଗଲା । କାଗଜଟିର ମାଲିକ ଅତି ବିନମ୍ରତାର ସହିତ ଉପସ୍ଥିତ ଜନତାକୁ ଲକ୍ଷ୍ୟକରି କହିଥିଲେ, ସ୍ଥାନୀୟ ସ୍ୱାର୍ଥସଂରକ୍ଷଣ ତଥା ଦେଶୀୟ, ଆନ୍ତର୍ଜାତିକ ସଂବାଦ ପରିବେଷଣ କରିବା ଉଦ୍ଦେଶ୍ୟ ନେଇ ଆମେ ଏହି ନୂତନ କାଗଜଟି ପ୍ରକାଶ କରୁଛୁ । ଆପଣ-ମାନଙ୍କର ସଦୟ ସହଯୋଗ ଆମ୍ଭେମାନେ କାମନା କରୁଛୁ । ଉତ୍ସବ ଶେଷରେ ଯିବା ପୂର୍ବରୁ କାଗଜର ମାଲିକ ସୁକୁମାରଙ୍କ ପିଠିରେ ହାତ ମାରି କହିଥିଲେ, ସୁକୁମାର ମୋ କାମ ଏବେ ଶେଷ ହୋଇଛି । ମୁଁ ଚାଲିଲି, ଏ କାଗଜ ତୁମକୁ ଲାଗିଲା, ଏ କାଗଜ ତୁମର, ମୁଁ ନଗଣ୍ୟ ମାତ୍ର । ବାସ୍ ଏତିକି ।

ଏ ମଧ୍ୟରେ ପତ୍ରିକାର ତ୍ରୟୋଦଶ ଜନ୍ମୋତ୍ସବ ପାଳନ ଶେଷ ହୋଇ ଗଲାଣି । ଦେଶ ବିଦେଶରେ ମୈଥିଳୀର ଯଥେଷ୍ଟ ସୁଖ୍ୟାତି । କୌଣସି ଦିନ କାଗଜର ନିର୍ଦ୍ଦିଷ୍ଟ ବିଭାଗର ଲେଖା ବନ୍ଦ ହୋଇ-

ଗଲେ ହଜାର ହଜାର ଚିଠି ଆସି ପହଞ୍ଚୁ ଥାଏ ସେହି ଗୋଟିଏ ପ୍ରଶ୍ନ ନେଇ । ଏହି ନିର୍ଦ୍ଦିଷ୍ଟ ଖବଗଟି ବନ୍ଦ ହୋଇଗଲା କାହିଁକି ? ସମ୍ପାଦକ ସୁକୁମାର ବାବୁ ଆଜି ଆବାଳବୃଦ୍ଧବନିତାଙ୍କ ନିକଟରେ ସୁପରିଚିତ । ସମସ୍ତେ ତାଙ୍କର ପ୍ରଶସ୍ତି ଗାନ କରୁଛନ୍ତି । ସୁକୁମାର ବାବୁଙ୍କ ପାଇଁ ମୈଥିଳୀ ବଂଚିଗଲା । ଏ ଆଉ ବନ୍ଦ ହେବନି ।

ସୁକୁମାର ବାବୁଙ୍କ ସଂପାଦନା···ଅଗ୍ନି ଉଦ୍‌ଗୀରଣ । କେଉଁ ଦିନ କାହାକୁ ଶନି ଛୁଇଁବ ସେ ହେବ ତାଙ୍କର ଲେଖନୀ ଧାରର ଶିକାର କେବଳ ତାଙ୍କୁଇ ଜଣା । ସମାଜର ସାମାନ୍ୟ ଅନ୍ୟାୟ ତାଙ୍କର ନେତ୍ରାରୁଢ଼ ହୋଇ ପାରେ ନାହିଁ । ଅଂଧକାର ମଧ୍ୟରେ ସେ ଦେଇଥାନ୍ତି ଆଲୋକର ସଂଧାନ । ନିସ୍ତେଜ ପଙ୍ଗୁ ପ୍ରାଣରେ ଆଣି ଦିଅନ୍ତି ଚମକ । ତାଙ୍କର ବ୍ୟକ୍ତିତ୍ୱ ବହୁବିଧ ବଳିଷ୍ଠ । ସେ ସରଳ ତରଳ ଶିଶୁ ମନ ନେଇ ଶିଶୁପାଇଁ, ଯୁବକର ଉନ୍ମାଦନା ନେଇ ଯୁବକ ପାଇଁ, ବୃଦ୍ଧର ଶୈଥିଲ୍ୟ ତଥା ପ୍ରବୀଣତା ନେଇ ବୃଦ୍ଧ ପାଇଁ ରଚନା କରି ପାରନ୍ତି । ସେ ବଳିଷ୍ଠ ବ୍ୟକ୍ତିତ୍ୱ ନିକଟରେ ଯୁଏଁ ଯୁଏଁ ଶିର ଅବନତ ହୋଇଯାଏ ।

ଅବସର ଥିଲେ, ମନ ଉତ୍କୃଷ୍ଠ ଥିଲେ ବେଳେ ବେଳେ ସେ ଏଇ ଦୈନିକ କଥା କୁହନ୍ତି । ବାସ୍ତବରେ କାଗଜଟିକୁ ଠିଆ କରାଇବା ପାଇଁ ତାଙ୍କର ଯେ ଅପ୍ରାଣ ଚେଷ୍ଟା ତାଙ୍କୁ ପ୍ରଶଂସା ନକରି ରହିହୁଏ ନାହିଁ ।

ଗୁଟିକଣ ସହକର୍ମୀଙ୍କୁ ନେଇ ସେ କାଗଜଟିର ସଂପାଦନା ଆରମ୍ଭ କରନ୍ତି । କାଗଜଟିର ଛପା ଆରମ୍ଭ ହେବା ବେଳରୁ ବଜାରରୁ ହକର କାଗଜ ବଣ୍ଟି ସାରି ଫେରିବା ପର୍ଯ୍ୟନ୍ତ ସେ ଚାହିଁ ବସିଥାନ୍ତି, କେତେ ପରିମାଣରେ କାଗଜ ବଣ୍ଟି ହେଲା ଜାଣିବା ପାଇଁ ।

କାଗଜଟିର ମାଲିକ ଗୁଜରାଟିଙ୍କ । ସେ ତାଙ୍କ ଗୁଜରାତ ନେଇ ବ୍ୟସ୍ତ ଥାଆନ୍ତି । ମାସ ମାସ ଧରି ଦରମା ମିଳେ ନାହିଁ । ପରିବା ଦୋକାନ, ମାଛ ଦୋକାନ, ପାନ ଦୋକାନ, ଦୁଧବାଲା, ଡାକ୍ତରର ବକେୟା ବଢ଼ି ଚାଲେ...। ତଥାପି ସୁକୁମାରଙ୍କ ଭ୍ରୂକ୍ଷେପ ନଥାଏ । ସେ ନିଜ କର୍ତ୍ତବ୍ୟ ପଥରେ ଆଗେଇ ଚାଲିଥାନ୍ତି । ବେଳେ ବେଳେ ସେ ନିଜକୁ ବ୍ୟଙ୍ଗ କରି କହୁଥାନ୍ତି, 'ଆମକଥା ଛାଡ଼ନ୍ତୁ ଆମେ ହେଲୁ ଏ କାଳର ଅବୈତନିକ ବୃତ୍ତିଜୀବୀ ।'

ଦ୍ୱିତୀୟ ବର୍ଷ ମୈଥିଳୀ ଜୀବନରେ ଆସେ ବିରାଟ ସଙ୍କଟ । ଏହି ଦରମା ନେଇ ଶ୍ରମିକଗଣ କାମ ବନ୍ଦ କରିଦେଲେ । ସୁକୁମାର ସମ୍ପାଦନା ଶେଷ କରି ଯାଇ ବସିଲେ କମ୍ପୋଜିଟର ଖାନାରେ କମ୍ପୋଜ କରି । ଦୀର୍ଘ ଗୋଟିଏ ସପ୍ତାହ ପରେ ସୁକୁମାରଙ୍କ ଅସୁମାରି ସଚେଷ୍ଟ ପ୍ରଭାବ ହେତୁ ଶ୍ରମିକମାନେ ଫେରିଲେ କାମକୁ । ମାଲିକ ଆସି ସୁକୁମାରଙ୍କ ପିଠିରେ ହାତ ମାରିଲେ । ସାଧୁବାଦ ଦେଲେ । "ଯାହା ହେଉ ଆପଣଙ୍କ ଚେଷ୍ଟାରୁ ଏହି ପୁଞ୍ଜିପତିମାନଙ୍କର ସମସ୍ତ ଚେଷ୍ଟା ବ୍ୟର୍ଥ ହେଲା ।" ବାସ୍ତବରେ ପୁଞ୍ଜିପତିମାନେ, ହତାଶ ହେଲେ । 'ମୈଥିଳୀ' ପ୍ରକାଶନ ବନ୍ଦ କରିଦେବା ଓ ସୁକୁମାରଙ୍କୁ ହାତ କରିବାର ସମସ୍ତ ଚେଷ୍ଟା ବ୍ୟର୍ଥ ହେଲା ।

ବହୁ ଛୋଟ ଛୋଟ ଘଟଣା ଘଟିଯାଇଛି । ସେ ସବୁ ବଖାଣି ବସିଲେ ସାତଖଣ୍ଡ ରାମାୟଣରୁ ବଳିବ ।

ମୈଥିଳୀର ଅଷ୍ଟମ ବର୍ଷର ସ୍ମୃତି । ୧୯୪୭ ର ଅଗଷ୍ଟ ପନ୍ଦର । ସ୍ୱାଧୀନତା ଦିବସ ଉପଲକ୍ଷେ ପ୍ରକାଶନା ବନ୍ଦ ଥାଏ । ଦେଶ ସାରା ସ୍ୱାଧୀନତାର ଉତ୍ସବ...ଉନ୍ମାଦନା । ପ୍ରବୀଣ ସୁକୁମାରଙ୍କ ଅଚାନକ ସିଦ୍ଧାନ୍ତ । ରାତିର ମଧ୍ୟାହ୍ନ ପ୍ରହରରେ ବ୍ରିଟିଶମାନେ ଶାସନ

ଭର ହସ୍ତାନ୍ତର କରିଦେବେ । ଏହି ଉତ୍ସବର ସଠିକ ବିବରଣୀ ସେ ଜନସାଧାରଣଙ୍କୁ ସକାଳ ସୁଦ୍ଧା ପରିବେଷଣ କରି ପଢ଼ିବାକୁ ଦେବେ । ଅଧିକ କାମ ପାଇଁ ଦ୍ୱିଗୁଣ ବେତନ ଦେବାର ପ୍ରତିଶ୍ରୁତି ଦେଇ ସେ ଶ୍ରମିକମାନଙ୍କୁ ଡାକ ଶେଷରେ ସହକର୍ମୀମାନଙ୍କ ସଙ୍ଗେ ନିଜେ ଯାଇ ବସିଲେ ସମ୍ପାଦନା ଟେବୁଲରେ । ଟେଲିପ୍ରିଣ୍ଟର ପରି- ଚାଳନାର ଗତି ଦ୍ରୁତରୁ ଦ୍ରୁତତର ହୋଇ ଉଠିଲା । ଶେଷରେ ସୁକୁମାର ରେଡ଼ିଓ ବନ୍ଦ କରି ଆରମ୍ଭ କଲେ ସମ୍ପାଦକୀୟ "ମହା- ମାନବର ସାଗର ତୀରେ ଗୁରୁଦେବଙ୍କର ରଚନାର କିଛି ଅଂଶ ସମ୍ପାଦକୀୟର ନାମ ।" କି ପ୍ରାଣ ପ୍ରାଚୁର୍ଯ୍ୟ ସେ ଭାଷା ! ଶତ ବର୍ଷର ପରାଧୀନତାର ଘନ ଅଂଧକାର ମଧ୍ୟରୁ ସ୍ୱାଧୀନତାର ସୂର୍ଯ୍ୟ ଆତ୍ମ- ପ୍ରକାଶ କରିଛି···ନୂତନ ସନ୍ଦେଶ, ନୂତନ ବାର୍ତ୍ତା ନେଇ । "ସେ ସମ୍ପାଦନା ସ୍ମରଣୀୟ, ଚନ୍ଦ୍ରାଧାର ବର୍ଣ୍ଣିତ, ସେଥିରେ ଥିଲା କୋଣାର୍କର କଳାପୀଠର, ଚିଲିକାର ନୀଳ ଢେଉର ଚଂଚଳତା, ସାଧୁ ସନ୍ଥର ସ୍ମରଣଭୂମି, ଧଉଳଗିରିର ଐତିହ୍ୟ, କପିଳାସର ଗୁରୁଗାମ୍ଭୀର୍ଯ୍ୟ, ପୁଣି ଜ୍ୟୋତ୍ସ୍ନାର ମନମତାଣିଆ ମାଦକତା ! ତା ପରେ···ସେ ଆଉ ସମ୍ପାଦକୀୟ ଲେଖି ନଥିଲେ ମଧ୍ୟ ଏହି ସମ୍ପାଦକୀୟ ପାଇଁ କେବଳ ସ୍ମରଣୀୟ ହୋଇ ରହିଥାନ୍ତେ । ସେଦିନ କଟକର ଉଲ୍ଲାସ ଓ ଉନ୍ମାଦନା ମଧ୍ୟରେ କାଗଜଟି ପ୍ରକାଶ ପାଇଥିଲା ପ୍ରକାଶ୍ୟର କର୍ମଚାରୀମାନେ ବେଳେ ବେଳେ କହିଥାନ୍ତି ।

ଆଉ ଗୋଟିଏ ଘଟଣା—ସମ୍ପାଦନାମଣ୍ଡଳୀର ସମସ୍ତ ସଦସ୍ୟ ସେଦିନ ଥାଆନ୍ତି ଅନୁପସ୍ଥିତ । ସୁକୁମାର ଏକା···ମନେ ମନେ ସ୍ଥିର କଲେ ମୈଥିଲୀର ଏକ ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶ କରିବା ପାଇଁ··· ହୀରାକୁଦର ଉଦ୍‌ଘାଟନ ଉତ୍ସବ ଉପଲକ୍ଷେ ଅସ୍ତ ସୂର୍ଯ୍ୟର ଶେଷ

ଘଗ ଆକାଶ-ବକ୍ଷରେ ଲଭ଼ ଆସୁଛୁ ! ପ୍ରଧାନମନ୍ତ୍ରୀ ସୁଇଚ ଉପରେ ହାତ ମାରିଲେ···ହୀରା ଖଣ୍ଡରେ ବିଜୁଳିବତୀ ଗୁଡ଼ିକ ଆକାଶର ତାରକାରାଜିକୁ ଉପହାସ କରି ଜଳି ଉଠିଲା । ଗୋଟିଏ ଜାତିକୁ ଜାଗ୍ରତ କରିବା ପାଇଁ ଏହା ଯେଉଁ ବିଦ୍ୟୁତର ବତୀ ଗୁଡ଼ିକ ଜଳାଇ ଦିଆଗଲା ତାହାର ଐତିହାସିକ ମୂଲ୍ୟ ଅତି ଅଧିକ । ଉତ୍ସବର ବିବରଣୀ ରେଡ଼ିଓ ଷ୍ଟେସନରୁ ବ୍ରଡ଼କାଷ୍ଟ ହେଉଥିଲା ।

ସିଗାରେଟ ଟିଣରୁ ସେ ଆଜ ଏକ ସିଗାରେଟ ଉଠାଇ ଆଣି ସେଥିରେ ନିଆଁ ଧରାଇଲେ । ବୟଏ ଆଣି ରଖି ଦେଇଗଲା ଗୋଟିଏ ଗ୍ଲାସରେ ଗ୍ଲାସେ ପାଣି । ସେ ନିର୍ଦ୍ଦେଶ ଦେଲେ ଯା'କହିବ କଂପୋଜିଟରମାନେ ରେଡ଼ି ହେବେ ।

ରାତି ହୁଏତ ପାହୁନାହିଁ । ରାସ୍ତା ଘାଟରେ ହକରଙ୍କର ଚିତ୍କାର ଶୁଣାଗଲା···ସ୍ୱତନ୍ତ୍ର ଦୈନିକ ! ଉତ୍କଳର ଅତୀତ ପରି ଭବିଷ୍ୟତ ଉଜ୍ଜ୍ୱଳମୟ···ହୀରାକୁଦ ଦେଶର ଭବିଷ୍ୟତ ଲାଗି ଏକ ଗୌରବମୟ ଭୂମିକା ସୃଷ୍ଟି କରିବ । ଏ ମାଟିରେ କ୍ଷୀର ନୀରର ପ୍ରାର୍ଥକ୍ୟ ରହିବ ନାହିଁ ଇତ୍ୟାଦି ଇତ୍ୟାଦି··· । ପାଠକଙ୍କ କଥା ଥାଉ···ସହକର୍ମୀମାନେ ଆଶ୍ଚର୍ଯ୍ୟ ହେଲେ । କଣେ କିପରି ଗୋଟିଏ ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶ କରି ପାରିଲା । ଏହିପରି ବହୁ ଘଟଣାରେ ସୁକୁମାରଙ୍କର ଦୈନିକ ପ୍ରତି ଯେ ଗଭୀର ମମତା ତାହା ଜଣା ଯାଇଥାଏ ।

ଦେଶରେ ବନ୍ୟା ହୁଏ···ଅଗ୍ନିକାଣ୍ଡ ହୁଏ···ମହାମାରୀ ହୁଏ···ଯେତେ ଦୁର୍ଦ୍ଦିନ ଓ ଦୁର୍ଦ୍ଦଶା ଠିକ୍ ସେତିକିବେଳେ ଦେଖିବ ସୁକୁମାରଙ୍କୁ । ତାଙ୍କର ନିର୍ଦ୍ଦେଶରେ କାଗଜରେ ଫୁଟି ଉଠେ ସେ ସବୁର କରୁଣ ଚିତ୍ର । ସରକାର ତଥା ସାଧାରଣଙ୍କୁ

ତାଙ୍କର ଉପସ୍ଥିତ କର୍ତ୍ତବ୍ୟ ନେଇ ଚେତାବନୀ । ଦେଶ ଗଠନରେ ତାଙ୍କର ଦାନ ବାସ୍ତବରେ ଅନସ୍ବୀକାର୍ଯ୍ୟ ।

ରାଜନୀତି ବଡ଼ ବିଚିତ୍ର ଜିନିଷ । କେତେବେଳେ କିଏ ତାର ଶିକାର ହେବ କହିବା କଠିନ । ସୁକୁମାର ଯେ ଦିନେ ଏଥିରୁ ବାଦ ଯିବେ ନାହିଁ ତାହା ସେ ଅନୁମାନ କରି ପାରି ନଥିଲେ । ନିର୍ବାଚନ ଶେଷ ହୋଇଗଲା, କାଗଜର ମାଲିକ ତପନଜୀଙ୍କ ଦଳ ଆଶାଜନକ ଭାବେ ନିର୍ବାଚନରେ ଜୟଯୁକ୍ତ ହୋଇ ପାରିଲେ ନାହିଁ । ତାଙ୍କୁ ବହୁ ସମୟରେ ବିରୋଧ ଦଳର ନେତା ଗୌରବଗଂଜନଙ୍କ ସାହାଯ୍ୟ ନେବାକୁ ହେଲା ।

ଏହି ଗୌରବ-ଗଂଜନ ପୂର୍ବତନ ରାଜ୍ୟର ଏକ ରାଜା । ଏହାଙ୍କର ଅତ୍ୟାଚାରରେ ଦିନେ ପ୍ରଜାକୁଳ ଆତଙ୍କ ମଣୁଥିଲେ । ଆଜି ଅବସ୍ଥାଚକ୍ରରେ ସେ ଲୋକ ପ୍ରତିନିଧି । ସୁକୁମାର କିନ୍ତୁ ଛାଡ଼ିବାର ଲୋକ ନୁହନ୍ତି । ସେ ବିଶ୍ୱାସ କରନ୍ତି ଗଣତନ୍ତ୍ରରେ । ତାଙ୍କୁ ସମାଲୋଚନା କରିବାରୁ ସେ କ୍ଷାନ୍ତ ହେଲେ ନାହିଁ । ଦିନକୁ ଦିନ ଗୌରବଗଂଜନଙ୍କ ବିରୁଦ୍ଧରେ ମୈଥିଲୀର ସମାଲୋଚନା ଉଗ୍ର ହେଲା । ସେ ତାଙ୍କ ଜୀବନରେ ଯେତେ ଯେଉଁ ଲମ୍ପଟତାରେ ସଂପୃକ୍ତ, ଅତ୍ୟାଚାର ଅନାଚାର କରିଛନ୍ତି ସେ ସବୁ ଲୋକଦୃଷ୍ଟିକୁ ଆସିଲା । ସେ ବରଦାସ୍ତ କରିପାରିଲେ ନାହିଁ । ସେ ଖୋଜିଲେ ତାର ଅସ୍ତ୍ର ପ୍ରତିକାର ।

ହଠାତ୍ ସେ ଦିନ ସୁକୁମାର କାଗଜର ମାଲିକଙ୍କଠାରୁ ନିର୍ଦ୍ଦେଶ ପାଇଲେ—ଗୌରବଗଂଜନଙ୍କ ବିରୁଦ୍ଧରେ ସମସ୍ତ ପ୍ରକାର ଲେଖା ଲେଖି ବନ୍ଦ କରିବାକୁ ହେବ । ସଂପାଦକ ଏଥିରେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, ହଠାତ୍ ଆପଣ ଏପରି ସିଦ୍ଧାନ୍ତ କଲେ

ଜାହିଁକି ? ପୂର୍ବରୁ ତ ଏ ବିଷୟରେ କିଛି କହି ନାହାନ୍ତି ।
ବର୍ତ୍ତମାନ ଗୌରବଗଞ୍ଜନଙ୍କ ବିରୁଦ୍ଧରେ ସମାଲୋଚନା ବନ୍ଦ କରି
ଦେଲେ 'ମୈଥିଳୀ'ର ସୁନାମରେ ଆଞ୍ଚ ଆସିବ । ସାରକ୍ୟୁଲେସନ୍
ଫେଲ୍ କରିଯିବ ।

ସେ କଥା ମୁଁ ବୁଝିବି ! "ତାହା ହେଲେ ମୁଁ ଏଠି କରିବି
କଣ ? ମୁଁ ମୋ ବିବେକ ବିରୁଦ୍ଧରେ କାମ କରି ପାରିବି ନାହିଁ ।"

"ପୂର୍ବ ପରି ତୁମେ ତୁମ ଦରମା ପାଇବ । ସେଥିରୁ ପଇସା-
ଟିଏ ବି କେହି କମାଇ ପାରିବେ ନାହିଁ ।"

"ପଇସାଟା ବଡ଼ କଥା ନୁହେଁ । ମୁଁ ମୈଥିଳୀର ପଲିସି
(ନୀତି) କଥା କହୁଛି ।"

"ପଲିସି ଆମେ କରିଛେ । ଆମ ସୁବିଧା ଦେଖି ବଦଳାଇ-
ବାରେ ଅସୁବିଧା ରହୁଛି କେଉଁଠି ?"

"ବିଳାତ ଆଗପରି କୌଣସି ସମ୍ବାଦପତ୍ରର ନୀତି ଓ
ଆଦର୍ଶ ନିର୍ଭରଯୋଗ୍ୟ ନ ହେଉ ଏ କଥା ମୁଁ ପସନ୍ଦ କରିପାରେ
ନାହିଁ ।

"ଏଠି ପସନ୍ଦ ଅପସନ୍ଦର ପ୍ରଶ୍ନ ଉଠୁ ନାହିଁ । ମୋତେ ଯେ
ସ୍ୱଳମୀତ କରିବାକୁ ହେବ ଅପଣ ତାହା ପୁରାପୁରି ଭୁଲି ଯାଉଛନ୍ତି
ବୋଧେ !

"କିନ୍ତୁ !"

କିନ୍ତୁର ପ୍ରଶ୍ନ ନାହିଁ । ଯାହା କହୁଛି କରିବାକୁ ହେବ !
ଗୌରବଗଂଜନଙ୍କ ବିରୁଦ୍ଧରେ ଲେଖା ବନ୍ଦ କରିବାକୁ ହେବ
ନଚେତ ଆପଣଙ୍କୁ ମୈଥିଳୀ ଛାଡ଼ିବାକୁ ପଡ଼ିବ କହି କାଗଜର
ମାଲିକ ଫୋନ୍ ଛାଡ଼ିଲେ ।

ସୁକୁମାରଙ୍କର ସବୁ ମନେ ପଡ଼ିଗଲା । କାଗଜର ମାଲିକ ପ୍ରଥମେ ଯାଇ ଏହି ଗୌରବଗଂଜନଙ୍କ ବିରୁଦ୍ଧରେ ଆନ୍ଦୋଳନ ସୁରୁ କରିଥିଲେ । ଆଜି ଅଜି ! ସାମାନ୍ୟ ଭାବିଲେ···ଉପସ୍ଥିତ କ୍ଷେତ୍ରରେ କରିବେ କଣ ? ନା' ସେ ତାଙ୍କର ବ୍ୟକ୍ତିତ୍ୱ ଓ ବିବେକକୁ ବଳି ଦେଇ ପାରିବେ ନାହିଁ । ତାଙ୍କୁ ସବୁଦିନ ପାଇଁ ମୈଥିଲୀ ଛାଡ଼ିବାକୁ ହେବ ।

ସଂପାଦକ ସୁକୁମାର ଅପଣାର କକ୍ଷଟି ମଧ୍ୟରେ ଅସମ୍ଭବ ଭାବେ ଗମ୍ଭୀର । ଯୁଗ୍ମ ସଂପାଦକ ଶର୍ମା—ଯାଇ ଠିଆ ହେବା ମାତ୍ରେ ସୁକୁମାର କହିଲେ ଶର୍ମା କାଲିଠାରୁ ତୁମେ ସଂପାଦକୀୟ ଲେଖିବ ।

"ଆପଣ କେଉଁଆଡ଼େ ଯିବେକି ?"

"ନା କେଉଁଆଡ଼େ ଯାଉନାହିଁ । ମୁଁ ଆଉ ମୈଥିଲୀରେ ରହୁନାହିଁ । ରିଜାଇନ୍ ଦେଇ ଦେଇଛି ।"

ସାର କଣ କହୁଛନ୍ତି—ବିସ୍ମିତ ହୋଇ ଚାହିଁ ରହିଲେ ଶର୍ମା··· ।

ସୁକୁମାର ଗମ୍ଭୀର ହୋଇ କହିଲେ ହଁ ଶର୍ମା ଯାହା କହୁଛି ଠିକ୍ । କାଲି ଯାହାକୁ କଳା କହିଥିଲି ଆଜି ତାକୁ ଧଳା କହି ପାରିବି ନାହିଁ । ଖୁନୀ ଗୌରବଗଂଜନ ଚିରଦିନ ମୋ ଦୃଷ୍ଟିରେ ଖୁନୀ—କୌଣସି କାରଣରୁ ତା ରଙ୍ଗ ବଦଳି ପାରେ ନା ।

କ୍ଷଣକ ଏ ମଧ୍ୟରେ ସୁକୁମାରଙ୍କ ମୈଥିଲୀ ତ୍ୟାଗ କରିବା କଥା ପ୍ରକାଶମାରେ ପ୍ରଚାର ହୋଇଗଲା । ସହକାରୀମାନେ କଲମ ଛାଡ଼ି ସୁକୁମାରଙ୍କ କକ୍ଷ ମଧ୍ୟକୁ ଆସିଲେ । କମ୍ପୋଜିଟରମାନେ କମ୍ପୋଜ ଛାଡ଼ି ଚାହିଁ ରହିଲେ···ପ୍ରେସ୍‌ମ୍ୟାନ ବିସ୍ମିତ ହୋଇ ଠିଆ ହୋଇଗଲେ···ପ୍ରୁଫ୍ ରିଡ଼ିଂ ସେକ୍‌ସେନ୍‌ରେ କୋଲାହଳ କେଇ ମିନିଟ୍ ପାଇଁ ବନ୍ଦ ହୋଇଗଲା !

ସବୁଦିନ ପରି ଅଗାମୀ କାଲିକୁ ସହକାରୀଙ୍କ ମଧ୍ୟରେ କାମ ବାଣ୍ଟିଦେଇ ଚଷମାକୁ ଭଲଭାବେ ପୋଛି ଲଗାଇ ସାରିବା ପରେ ସେ ବାହାରିଗଲେ । ରାସ୍ତା ପର୍ଯ୍ୟନ୍ତ ପ୍ରେସ୍‌ର ସମସ୍ତ କର୍ମଚାରୀମାନେ ପଛେ ପଛେ ଆସୁଥାନ୍ତି । ସମସ୍ତଙ୍କୁ ଫେରିଯିବା ପାଇଁ କହି ସେ ପ୍ରେସ୍ ଆଡକୁ ଆଡ଼ଆଖିରେ ଚାହିଁଲେ । ପ୍ରେସ୍ ସମ୍ମୁଖରେ ଗୋଟାଏ ବିରାଟ ସାଇନ୍ ବୋର୍ଡ଼ ଲେଖାଅଛି । ମୈଥିଳୀ ପ୍ରକାଶନୀ ! ଆଜକୁ ଅଠବର୍ଷ ତଳେ ଏ ସାଇନ୍‌ବୋର୍ଡ଼ ନଥିଲା । ଗୋଟିଏ ଛୋଟ ପଟା ଉପରେ ସୁକୁମାର ନିଜ ହାତରେ 'ମୈଥିଳୀ ପ୍ରକାଶନୀ' ଲେଖି ଝୁଲାଇ ଦେଇଥିଲେ ।

ପରିଚିତ ରାସ୍ତାରେ ପାଦ ଆଗକୁ ବଢ଼ିଲା । ସେ ନିଶ୍ଚିତ ଯେ ମୈଥିଳୀର ସଂପାଦକୀୟ ଲେଖିବା ପାଇଁ ତାଙ୍କୁ ଆଉ ଏ ରାସ୍ତାରେ ଆସିବାକୁ ପଡ଼ିବ ନାହିଁ । ରାସ୍ତା ପାର୍ଶ୍ୱର ଅମ୍ରକାନନ, ବେଉଁଶ କୁଞ୍ଜ, ବାଉଁଶ ବନ, ଛୋଟ ଛୋଟ ସଂରଣୀଟି କୁଳୁ କୁଳୁ ହୋଇ ବହି ଯାଉଛି । ପରିଚିତ ଅପରିଚିତ ବହୁ ଜାତି ପକ୍ଷୀର କୂଜନ । ସୁକୁମାର ସବୁଦିନ ଏଇଠାରେ କିଛି ସମୟ ଠିଆ ହୋଇ ଘରକୁ ଫେରି ଯାଆନ୍ତି । ସେଦିନ ବି ଠିଆ ହେଲେ ! ଅସ୍ତ ସୂର୍ଯ୍ୟର ଶେଷ ଆଲେକ୍ଷ୍ୟ ବନାନ୍ତରେ ଲୁଚି ଯାଉଥିଲା । ଦିଗ୍‌ବଳୟର ସୀମାରେ ଉଡ଼ି ବୁଲୁଥିଲେ କେଇଟି ଛୋଟ ବିହଗ ! ଅଗାମୀ କାଲିକୁ ସେ କଣ ସଂପାଦକୀୟ ଲେଖିବେ ସେ ନେଇ ସେ ଚିନ୍ତା କରୁ ନଥିଲେ । ସେ ଏ ଜାତିର ଅବୈତନିକ ବାର୍ତ୍ତାଜୀବୀ ।

"ଫଲଗୁ"

---

ଜୁଲାଇ ଅଗଷ୍ଟ ୬୭

ମୁଦ୍ରାକର ଶ୍ରୀଦିବାକର ମିଶ୍ର, ଗୋସ୍ୱାମୀ ପ୍ରେସ, କଟକ—୨